# ଶ୍ରୀ ଗୋଦାବରୀଶ ଚରିତାମୃତ



ସଂଯୋଜନା :

**କବି ଶ୍ରୀ ଗୋପୀନାଥ ସେନାପତି**

ସମ୍ମାଟଣ୍ଡ୍ରନ ଗ୍ରନ୍ଥମାଳା ( ପଞ୍ଚମ ପୁଷ୍ପ )

# ଶ୍ରୀ ଗୋଦାବରୀଶ ଚରିତାମୃତ

କବି

ଶ୍ରୀ ଗୋପୀନାଥ ସେନାପତି



ପ୍ରଥମ ପ୍ରକାଶନ

୧୯୮୨

ମୂଲ୍ୟ—ଟ୩-୦୦

ତିନିଟଙ୍କା ମାତ୍ର

# SRI GODAVARISA CHARITAMRUTA

by

Poet Sri Gopinath Senapati

C/o. Prof. G. K. Brahma,
Ratha Danda. Bhubaneswar-751002

Printed at
Mangala Printers,
236, Bapuji Nagar, Bhubaneswar-751009
Year of Composition 1956-57
Year of Publication 1982
Available at :

Kalinga Student's Store, Binoda Bihari, Cuttack.
Dharma Grantha Store, Alisa Bazar. Cuttack.
Trilochan Book Stall, O,R.T. Bus stand, Bhubaneswar.
Gyana Mandir, R.K. Hotel Road, Berhmpur.

## ଶ୍ରୀ ଗୋଦାବରୀଶ ଚରିତାମୃତ

କବି

ଶ୍ରୀ ଗୋପୀନାଥ ସେନାପତି (ବାଣପୁର)

ମାର୍ଫତ — ଅଧ୍ୟାପକ ଗୌରକୁମାର ବ୍ରହ୍ମା

ରଥଦାଣ୍ଡ, ଭୁବନେଶ୍ୱର-୨

ମୁଦ୍ରଣ—

ମଙ୍ଗଳା ପ୍ରିଣ୍ଟର୍ସ

୨୩୬, ବାପୁଜୀନଗର, ଭୁବନେଶ୍ୱର-୭୫୧୦୦୯

ରଚନାକାଳ ୧୯୫୬-୫୭

ପ୍ରକାଶ କାଳ ୧୯୮୨

# ଉତ୍ସର୍ଗ

ପୁଣ୍ୟଶ୍ଳୋକ

ସ୍ୱର୍ଗତ ପଣ୍ଡିତ ଗୋଦାବରୀଶ ମିଶ୍ରଙ୍କ

ପୁଣ୍ୟସ୍ମୃତିରେ ଉତ୍ସର୍ଗୀକୃତ

ଏବଂ

'ଶ୍ରୀ ଗୋଦାବରୀଶ ଚରିତାମୃତ

ବାଣପୁର

ଗୋଦାବରୀଶ ମହାବିଦ୍ୟାଳୟ ପ୍ରାଙ୍ଗଣରେ

ପଣ୍ଡିତ ଗୋଦାବରୀଶଙ୍କ

ତା ୭।୧୧।୮୨ ଦିନ ପ୍ରତିମୂର୍ତ୍ତି ଉଦ୍‌ଘାଟନ ଉତ୍ସବରେ

ଓଡ଼ିଶାର ମୁଖ୍ୟମନ୍ତ୍ରୀ

ମାନ୍ୟବରୀକ ଶ୍ରୀଯୁକ୍ତ ଜାନକୀବଲ୍ଲଭ ପଟ୍ଟନାୟକଙ୍କ

କର୍ତ୍ତୃକ

ଉନ୍ମୋଚିତ ।

ଦେଶାନୁରାଗାବ୍ଧି ଉଦ୍ଭବବେଗାଦ୍

ହେଲାବିହେଲ୍ୟାଥ ସୁଖଂ ସମଗ୍ରମ୍ ।

ସମସ୍ତ କ୍ଲେଶାନ୍ ବିବିଧାନ୍ ମହୋଗ୍ରାନ୍

ଗୋଦାବରୀଶଂ ସତତଂ ସ୍ମରାମି ॥

# ଦୁଇ କଥା

ଶ୍ରୀ ଗୋଦାବରୀଶ ଚରିତାମୃତ ପ୍ରାୟ ୨୫।୨୬ ବର୍ଷ ତଳେ ୰ପୁଣ୍ୟାତ୍ମାଙ୍କ ବିୟୋଗ ପରେ ଲେଖା ହେଲା । ସେତେବେଳେ ମନେ ହେଲା ଜନସାଧାରଣଙ୍କ ନିକଟରେ ଜାତୀୟ ନେତୃ-ବର୍ଗ ମହାପୁରୁଷ ମାନଙ୍କର ଜୀବନ ବୃତ୍ତାନ୍ତ ପହଞ୍ଚାଇ ଦେବାକୁ ହେଲେ ସୁର ଓ ତାଳ ସମନ୍ୱିତ କବିତା ମାଧ୍ୟମ ହିଁ ଶ୍ରେଷ୍ଠ ପନ୍ଥା । ଏ କ୍ଷେତ୍ରରେ ଉତ୍କଳ ଗୌରବ ମଧୁସୂଦନ, ଉତ୍କଳମଣି ଗୋପବନ୍ଧୁଙ୍କ ଜୀବନ ବୃତ୍ତାନ୍ତ ଉପରେ କବିତା ରଚନାର ପ୍ରୟାସ ଥିଲା । ପ୍ରଥମତଃ ୰ ପୁଣ୍ୟାତ୍ମା ଗୋଦାବରୀଶଙ୍କ ବିୟୋଗାନ୍ତ ପରୀକ୍ଷାମୂଳକ ଭାବେ ଉକ୍ତ ପୁସ୍ତିକାର ସଂଯୋଜନା କଲି ଏବଂ ଦାସକାଠିଆ ଗାୟକ ୰ ଲକ୍ଷ୍ମୀଧର ମହାପାତ୍ର ଖୋର୍ଦ୍ଧା ସବ୍‌ଡିଭିଜନର ବହୁ ବିଦ୍ୟାପୀଠ ମାନଙ୍କରେ ପରିବେଷଣ କରିଥିଲେ ।

ମୋ ଜୀବନର ଘାତ ପ୍ରତିଘାତ ଭିତରେ ବହୁ ଗଚ୍ଛିତ ଲେଖାରୁ ୩।୪ ଖଣ୍ଡ ପ୍ରକାଶ ପାଇଲା ପରେ ଗତ ବର୍ଷ ପଣ୍ଡିତ ଗୋଦାବରୀଶଙ୍କ ଜନ୍ମୋତ୍ସବ ପବିତ୍ର ଦୀପାବଳୀ ଦିବସରେ ପ୍ରକାଶ କରିଦେବା ପାଇଁ ସଚେଷ୍ଟ ଥିଲି । ମାତ୍ର ହଠାତ୍ ମୋର ଜନ୍ମପୀଠ ବାଣପୁର ଗୋଦାବରୀଶ ମହାବିଦ୍ୟାଳୟ ଅଧ୍ୟକ୍ଷ ମହୋଦୟ ତଥା ବିଦ୍ୟାର୍ଥୀ ବନ୍ଧୁମାନଙ୍କର ନିମନ୍ତ୍ରଣ ପାଇଲି । ୰ ପୁଣ୍ୟାତ୍ମାଙ୍କର ପ୍ରତିମୂର୍ତ୍ତି ଉଦ୍‌ଘାଟନ ଉତ୍ସବରେ ଯୋଗଦେବା ପାଇଁ । ଉତ୍ସବରେ ପୁରୋଧା ହେବେ ଆମର ବରେଣ୍ୟ ନେତା ସାହିତ୍ୟିକ ଓଡ଼ିଶାର ମୁଖ୍ୟମନ୍ତ୍ରୀ ମହୋଦୟ ।

ଛପା କାମ ଶେଷ କରାଇଦେଲି । ସୀମିତ ସମୟ ଭିତରେ ମୁଖବନ୍ଧ ବା ଅଭିମତ ସଂଗ୍ରହ କରିପାରି ନାହିଁ । ମୋର ଗୁରୁକଳ୍ପ ଓଡ଼ିଶାର ସୁନାମଧନ୍ୟ କବି ଶ୍ରୀଯୁକ୍ତ ଗଡ଼ନାୟକଙ୍କ ଭାଷାରେ 'ପବନ ଯେତେ କଳୁଷିତ ହେଲେ ମଧ୍ୟ ଚନ୍ଦନ ଗଛକୁ ଛୁଇଁବା ପରେ ତାର ନାମାନ୍ତର ଘଟେ । ତେଣୁ ଗୋଦାବରୀଶଙ୍କ ଜୀବନୀ ଯେଉଁ ଭାଷାରେ ଲେଖାଯାଉ ପଛେ ମୁଖବନ୍ଧ ଆଉ ଦରକାର ନାହିଁ ।' ଏଣୁ ଭାଷା, ଭାବ, ବିଭବ ଯାହାହେଉ, ମହାପୁରୁଷଙ୍କ ଜୀବନ ବୃତ୍ତାନ୍ତ ହେତୁ ସୁଧୀ ପାଠକ ବର୍ଗ ସାଦରେ ଗ୍ରହଣ କରିବେ ବୋଲି ମୋର ଏକାନ୍ତ ଆଶା ।

ଯେ କେହି ନିଜର ନାମ ଗୋପନ ରଖି ଅକୁଣ୍ଠିତ ଭାବେ ଏହାର ପ୍ରକାଶନ ସକାଶେ ଅର୍ଥ ସାହାଯ୍ୟ କଲେ ତାଙ୍କ ପ୍ରତି ସବୁବେଳେ ଶୁଭେଚ୍ଛା ଓ ଆଶୀର୍ବାଦ ରହିଛି । ଆଜିର ଏହି ଅବସରରେ ମଧ୍ୟ ତାଙ୍କ ପାଇଁ ଅଶେଷ ଆଶୀର୍ବାଦ ପ୍ରଦାନ କରୁଛି ।

ପାଣ୍ଡୁଲିପିକୁ ଛପାଖାନା ଉପଯୋଗୀ କରିବାରେ ଏବଂ ଗ୍ରନ୍ଥାବଳୀରୁ ৺ ପଣ୍ଡିତଜୀଙ୍କର ଆବଶ୍ୟକୀୟ କବିତା ନକଲ କରିବାରେ ଶ୍ରମ ଏବଂ ସମୟକୁ ସାର୍ଥକ କରିଛି ମୋର କନ୍ୟା ଶ୍ରୀମତୀ ଆୟୁଷ୍ମତୀ ସରୋଜବାଳା ଶ୍ରଦ୍ଧେୟ ବିନାୟକ ପାତ୍ରଙ୍କ କନ୍ୟା । ମୋର ଏହି ଉଦ୍ୟମ ପଣ୍ଡିତଜୀଙ୍କ ଜୀବନ-ଚରିତ ପରିବେଷଣରେ ଲୋକ ପ୍ରାଣକୁ ଉଦ୍‌ବୁଦ୍ଧ କଲେ ଶ୍ରମ ସାର୍ଥକ ମଣିବି ।

ଇତି

**ଲେଖକ**

# ଶ୍ରୀ ଗୋଦାବରୀଶ ଚରିତାମୃତ

## ବନ୍ଦନା

( ଦାଶକାଠିଆ )

ବନ୍ଦଇ ପୁଣ୍ୟ ଶ୍ଳୋକ,   ପୂଜ୍ୟ ଗୋଦାବରୀଶ ହେ !
ଉତ୍କଳ ଜନନୀ   ସେବାରେ ଜୀବନ
ବିତରି ରଖିଲ ଅକ୍ଷୟ ଯଶ
ଦିବ୍ୟ ଆଦର୍ଶ ହେ କଲ ପ୍ରକାଶ
ଦୁଃଖେ ସୁଖେ ବେନି ପଥେ ସନ୍ତୋଷ ।
ବିଦ୍ୟାର୍ଥୀ ସ୍କୁଲରେ   ସାଧନା ଯେ ଥିବେ
ଏ ଜାତି ତରୁଣ ପୁଣ୍ୟ ପାଥେୟ ,
ଗୋପବନ୍ଧୁ ମହା-   ମନ୍ତ୍ରେ କି ସୁଚରେ
ଗାଇ ଜନ୍ମଭୂମି ଜନନୀ ଜୟ
କଲ ସରସ, ସେ ପରିବେଶ
ଉପାନ୍ତ ଅଞ୍ଚଳେ ଭ୍ରମି ବିଶେଷ ।
ଶିକ୍ଷାସଂସ୍ଥାପନେ   ବିହିତ ବିଧାନେ
ସ୍ଥାପି ବିଶ୍ୱ ବିଦ୍ୟାଳୟ ଦେଶେ
ଅସଂଖ୍ୟ ଆଲେଖ୍ୟ   ଭରିଦେଲ ଜାତି
ଭାରତୀ ଭଣ୍ଡାରେ ଅତି ହରଷେ
ନୋହି ବିମର୍ଷ ହେ ନାନା ସଂଘର୍ଷ
ଅତିକ୍ରମି ତେଜୋଦୀପ୍ତ ପୌରୁଷ
ବାଣପୁରବନ   କେଦାର କାନ୍ତାର
ଶାଣିଅ କହୁଛୁ ଅନ୍ତରବାଣୀ
ସତ୍ତ୍ରୋଇ ସିକତା   ବେଳାଭୂଇଁ ଅବା
ମହେନ୍ଦ୍ର ତନୟା ତଟିନୀ ରାଣୀ
ମାଗେ ଆଶିଷନ୍ତେ ପଦ ସାରସ
ସ୍ମରେ ଗୋପୀନାଥ ସାନସହଂସ ।

# ଶ୍ରୀ ଗୋଦାବରୀଶ ଚରିତାମୃତ

ଘନ ବନକାଟି ପାହାଡ଼ିଆ ଝରଣଇ
ଝରନ୍ତେ ଶାଳିଆ ଯହିଁ ଧୀରେ ଯାଏ ବନ୍ଧୁ
ଛୁଇଁ ବହଳିଆ ବନ ରସାଳ ଗହଳ
ବନ ପକ୍ଷୀ ମୃଦୁଗୀତ କଳ କୋଳାହଳ
ଶ୍ୟାମଳ ଶଇଳ ଘଣ୍ଟଶିଳା ମଥା'ଟେକେ
ଅସ୍ତଗାମୀ ରବିଛବି ଝଟ ମୁହେଁ ମାଖେ
ଝଲେଶ୍ୱର ଚୂଡ଼ା ଛୁଇଁ ବାଆ ଆସେ ବନ୍ଧୁ
ଶୋଲେଶ୍ୱର କାନେଦାଏ ଗୋପନେ କି ଛନ୍ଦ
ଦୃହା ଦୃହାଁ ସଜନୀ ଏ ଭୂଇଁର ସୁଷମା
ନଳକା ନିହସ୍ୱବୋଲା! ହସ ଅନୁପମା
ଏ ପୀଠର ମହାମୂଲ୍ୟ ନିଧି ଗଲା ହଜି
ତ୍ରିଭୁବନେ ମିଳିବକି ଯେତେ ଯାଅ ଖୋଜି
ବେଲାବନ ଅନ୍ତସ୍ଥଳେ ଗୁହାଁ ଶ୍ରେଷ୍ଠ ଗାଆଁ
ଶାସନରେ ଗଣା ଶ୍ରୀନବାସପୁର ନାଆଁ
କାଳ କାଟୁଥିଲେ ଭକ୍ତି ମିଶ୍ର ଲଙ୍କରାଜ
ସାଧକ ନୈଷ୍ଠିକ ତପ୍ତ ସୁବର୍ଣ୍ଣର ତେଜ
ଧ୍ୟାନ ବିନା ସେ ମନେ ଲଭନ୍ତି ସନ୍ତାପ
ଭଗବତୀ ପୀଠେ ଆଚରନ୍ତି ଜପ ତପ
ପ୍ରତିନିତ୍ୟ ନୈବେଦ୍ୟ ତାଙ୍କ ହବିଷାନ୍ନ ମୁଠେ
ଭଲମନ୍ଦ ନୈବେଦ୍ୟ ଯାହା ଯେଉଁଦିନ ଜୁଟେ

ଶାଳିଆ ସକଳେ ମୀଠ ସାରଣ୍ଟ ସ୍ନାହାନ
ଦେବାର୍ଚ୍ଚନା ହୋମ କାର୍ଯ୍ୟେ ଥାନ୍ତି ଜମଗନ

କାଳ କାଳ ବିତିଗଲା ନଶୁଣିଲେ ପ୍ରଭୁ
ଖୋଜନ ଭଜନ କର୍ମ ଭକ୍ତି ହେଲା ସବୁ

ବାରବର୍ଷେ ଗୋଦାବରୀ ବାରୁଣୀ ସ୍ନାହାନ
ଶୁଭଯୋଗେ ପଡ଼ିଲାହେ ଶୁଣ ବିଜ୍ଞ ଜନ
ବିପ୍ର ଲିଙ୍ଗରାଜ ମନେ ବାନ୍ଧି ଦୃଢ଼ ଆଶା
ଗୋଦାବରୀ ତୀର୍ଥେ ଯାତ୍ରା ରଚିଲେ ସହସା
ବୃଦ୍ଧକାଳେ ପଦବ୍ରଜେ ମାଘମାସ କାଳ
ଚଥିଗ୍ଳି ଦେଖିଲେ ଗୋଦାବରୀ କୂଳ
ଦିନ, ମାସ ଧରି ଦୀର୍ଘକାଳ ପୂର୍ଣ୍ଣକ୍ଷେତ୍ରେ
ମାନସ ତୋଷନ୍ତି ଭଗବତୀ ପୂଜାସ୍ତୋତ୍ରେ
ଦିନେ ନୁହେ ବାରି ବାର ସ୍ନାନ ବିଧି ସାରି
କାଳାନ୍ତେ ଫେରିଲେ ବାସେ ପଥ ଅନୁସରି
ମାଆ ଭଗବତୀ ଅବା କରୁଣା ବହିଲେ
ଗୋଦାବରୀ ସ୍ନାନ ପୁଣ୍ୟ ଫଳ ରୂପଦେଲେ
ଯଥାକାଳେ ଗର୍ଭବତୀ ପତ୍ନୀ ସରସ୍ୱତୀ
ମିଶ୍ର ଲିଙ୍ଗରାଜଙ୍କର ହରଷିତ ମତି
ଦଶମାସ ଦଶଦିନ ହୋଇଲା ସମ୍ପୂର୍ଣ୍ଣ
ଯୋଗ ଯାଗ ଜପ ସତେ ହେଲେ ରୂପବାନ
କୁଟୀର ସହସା ଦିନେ ଉଠିଲା ଉଜ୍ଜ୍ୱଳି
ଦେବତା କି ମର୍ତ୍ତ୍ୟେ ସତେ ଆସେ ଅବତରି
ଅମୃତ ଯୋଗ ଯେ ମହା ପବିତ୍ର ଲଗନ
ଧୀରେ ଧୀରେ ବହୁଥିଲା କାର୍ତ୍ତିକା ପବନ
ମଥା ପିନ୍ଧୁଥିଲା ଛନ ଛନ ଧାନବୁକେ
ଗିରିଚୂଳେ ସୂର୍ଯ୍ୟଦେବ ନଉଁଥିଲେ ସୁଖେ

ଆକାଶେ ବିକଶିଥିଲା ଉଷାରାଣୀ ଜ୍ୟୋତି
ଶ୍ରୀ ଗୋଦାବରୀଶ ମଣ୍ଡି ଦେଲେ ବସୁମତୀ

ଶାସନ ଗୋଟାକଯାକ ପଡ଼ିଲା ଚହଳ
ଆବାଳବୃଦ୍ଧ ବନିତା କଣ୍ଠ କଲରୋଳ

ଉଚ୍ଛୁଳି ପଡ଼ିଲା ଜଣେ ଜଣେ ହେଲେରୁଣ୍ଡ
ଲୋକାରଣ୍ୟେ ପୂର୍ଣ୍ଣ ଶ୍ରୀନିବାସପୁର ଦାଣ୍ଡ
ପକ୍ଷୀଗଣ ଚୂତଡ଼ାଳେ ଗାଇଲେ ସଂଗୀତ
କଲତାନେ ଶାଳାବତୀ ହେଲା ବିମୋହିତ
ଘଣ୍ଟଶିଳା ସତେ ପ୍ରେମେ ଉଲ୍ଲସିତ ହେଲା
ବେଣୁବନେ ମର ମର ଧ୍ୱନି ବିରଚିଲା
ହୁଆଁସ ସଞ୍ଜ ଅନ୍ଧାରେ କୋଟି କୋଟି ତାରା
ମହାକାଶେ ମୁହୂର୍ତ୍ତିକେ ହେଲେ ଆତ୍ମହରା
ଦେବଗଣ ସୁରଲୋକୁ କଲେ ଆଶିର୍ବାଦ
ନରଗଣ ବିସ୍ମରିଲେ ତୁଟିଲା ପ୍ରମାଦ
ଉତ୍କଳ ଜନତା ଜଡ଼ ଅନ୍ଧକାର ମୁଖେ
ଆଲୋକ ଜାଳିବ ଏଇ ଶିଶୁଧିବବୁନ୍ଦେ
ପୁରେ ପୁରେ ଦ୍ୱାରେ ଦ୍ୱାରେ ଦୀପାବଳୀ ମାଳା
ଉଦ୍ଭାସି ଉଠିଲା ପଲ୍ଲୀପୁର ଚନ୍ଦ୍ରଶାଳା
ଦେବାଳୟେ ଘଣ୍ଟଧ୍ୱନି ପଡ଼ିଲା ଝଙ୍କୁଳି
ଭଗବତୀ ମନ୍ଦିରରୁ ଶୁଭିଲା କାହାଳୀ
ଲିଙ୍ଗରାଜ ମିଶ୍ରଙ୍କର କୁଟୀର ପ୍ରାଙ୍ଗଣ
ଆନନ୍ଦ ତରଙ୍ଗ ସ୍ୱନେ ହେଲା ତାନମାନ
ପ୍ରସୂତିଗୃହେ ଅନୂଢ଼ ଅଗ୍ନି ଉଜ୍ଜ୍ୱଳିଲା
ନିମିଷେକେ ଅନ୍ତଃପୁର ଝଟକି ଉଠିଲା
ପାଖକରେ ଧାଈ ଥିଲା ପାଖକେ ଜେଜେମା
ଆସୁତ୍‌ଜାତ ଶିଶୁକୁ ବୋଲନ୍ତି ଆଲୋ ମା

ଦେଖିସ ଦେଖିଯ ନାଏ ଅଛ ହେ ବାହାରେ
ପୂନିଅଁର ଚନ୍ଦ ଆଜି ଉଇଁଛି ଏଘରେ
ବହୁ ବହୁ ଜନ କୋଳାହଳ ନୁହେବାର
ନୂଆପୁଅ ଦେଖିବାକୁ ଜଣ ଜଣ ଭଡ଼
ପୁରେ ପଦ ଦେଇ ଧୀରେ ଶିଶୁମୁଖ ଚୁମ୍ବି
ଫେରିଗଲେ ହରଷରେ କୁହାକୁହି ହୋଇ
ଦେବଶିଶୁ ସତେଅବା ମର୍ତ୍ତ୍ୟେ ହେଲା ଜାତ
ତେଣୁ ଆଡ଼ୁଆଳେ ରଖିଥାନ୍ତି ଜଗନ୍ନାଥ

ଶିଶୁଟି ବଢ଼ଇ ଚନ୍ଦ୍ରକଳାପ୍ରାୟ
ତୁଳନା ନାହିଁବା ତା'ର
ପାଞ୍ଚଦିନେ ଷଷ୍ଠୀ ଆଉ ବାଟଯାତ୍ରା
ବାରଦିନେ ହୁଏ ସ୍ଥିର
ନାଆଁ ବାଛି ଦେବେ ଏକୋଇଶ ଦିନେ
ନାମ କରଣର ଧାର୍ଯ୍ୟ
ମିଶ୍ର ଲିଙ୍ଗରାଜ ପୁରେ ବନ୍ଧୁଗଣେ
ଆଦରେ ନେଲେ ସଂବାଦ
ସାଦରେ ବସାଇ ହୃଦସ୍ଥ ସଙ୍ଗାଳି
କୁମର ମଣିଙ୍କୁ ଆଣି
ଜଣେ ଜଣେ ହାତେ ସମର୍ପି ଦିଅନ୍ତି
ଅପୂର୍ବ ଲାବଣ୍ୟ ଠାଣି
ଶୋଭା ଦେଖି ମନ ଲୋଭ ବଳିଯାଏ
ଅସ୍ଥି ହୁଏ ନାହିଁ ନାମ
ଆସୁଥିବା ନାମ ବସ୍ତୁରତ୍ନ ହୁଏ
ଦେଖିଦେଲେ ଗୁଣଧାମ

ମିଶ୍ର ଲିଙ୍ଗରାଜ ଉଠି ବଖାଣିଲେ
ଏଇଥି ପାଇଁକି ଭଲ
ଗୋଦାବରୀ ପୁଣ୍ୟତୀର୍ଥ ଆଶିର୍ବାଦେ
ପାଇଛି ମୁଁ ସୁନାଥାଳ
ପୁଅ ନାମ ତେଣୁ ଗୋଦାବରୀ ଦେଇ
ଏଇ ମୋ ମନର କଥା
ସହାସ୍ୟ ବଦନେ ସମ୍ମତି ମିଳିଲା
ହଲିଗଲା ସଭିଙ୍କ ମଥା
ପୁଅ ନାଆଁ ତେଣୁ ଗୋଦାବରୀ ହେଲା
ପୁଣ୍ୟ ଶ୍ଳୋକ ଗୋଦାବରୀଙ୍କ
କୋଟି ନିକ୍ଷେପିତ ଅନ୍ତର ବେଦନା
ନବାରୁଣ ଧନ୍ୱନ୍ତରଙ୍କ

\+ \+ \+

କବି ବୈକୁଣ୍ଠନାଥ କହୁଛନ୍ତି :

ଏଭଳି ପୁତ୍ରଙ୍କ ମଧ୍ୟେ କିଏ ଜାତ
ଜନମ କରିବ ଆଉ
ଚନ୍ଦ୍ର ପ୍ରତିମାଟି ଆବାସେ ସତେଲେ
ଅଙ୍ଗ ଦିଶେ ଡାହୁ ଡାହୁ

\+ \+ \+

ମାସ ପରେ ମାସ ବର୍ଷପରେ ବିତେଦିନ
ଦିନୁ ଦିନୁ ନୂଆ ପୁଅ ହେଲେ ବିମୋହନ
ଶିଶୁ ମେଳେ ହରଷରେ ଖେଳ କୁତୂହଳେ
ଦିନକଟେ ଢେଙ୍କିମାଡ ଶାଳିଆ ସନ୍ମିଳେ

ରସାଳ ଗନ୍ଧଳ ବନେ ସାଥୀ ମେଳେ ବୁଲି
ଶୋଷ ଗୃହ୍ଣି ଶଯ୍ୟା ହେଲେ ଦୁଃଖ ଯାଏ ଭୁଲି
ଯଥା କାଳେ ଗୃଟଶାଳେ ଆରମ୍ଭିଲେ ପାଠ
ଅଢ ବିଚକ୍ଷଣ ବୁଦ୍ଧି ହେଲେ ବଡ଼ଗୃଟ

+ + +

ପୂଜ୍ୟାରାଧ୍ୟ ଛବ ବୈକୁଣ୍ଠନାଥ :

ସୁଅଟି ପଢ଼ିଲା ବହୁ ପାଠଶାଠ
କେତେ ଅଂରଜିଲା ଗୁଣ
ବାହ୍ନୁଲ ନବାନେ ଯାଇବ କଥାଲେ
କହୁଲେ ନଥାଏ ଖୁଣ
ନୂଆ ଯଉବନ କାଉଁଷ କାଠିକା
ଛୁଇଁଲା କଶୋର ତନୁ
ଯିଏ ଦେଖେ ସିଏ ଗୃହେଁ ପଦ୍ମରେଳେ
ମରଚେ ବଟେ ଅତନୁ

+ + +

ଶିକ୍ଷା କ୍ଷେତ୍ରେ ଦକ୍ଷ ପଣେ ହେଲେନ କେ ସମ
ସାହେବ ସ୍ଵାକମ ବୁଝି ଗୁଣ ଅନୁପମ
ଅବଶ୍ୟ ଉତ୍ସାହ ଦେଲେ ଉଚ୍ଚଶିକ୍ଷା ପାଇଁ
ବିଦ୍ୟା ଅଧ୍ୟୟନ କଲେ ନାନା ଦୁଃଖ ସହି

ଅଶନ ବସନ ବାଧା କହୁଲେ ନସହେ.
ତଥାପି କଟଇ କାଳ ମନ ହରଷରେ
ବିଷମ ଦୁଃଖରେ କେବେଁ ନ ହୋଇ ବିମୁଖ
ପାଠ ପଢ଼ା ହେଲା ଶେଷ ସହି ନାନା ଦୁଃଖ
ଶାସକ ଦୁଷ୍ଟାପଣାଳୀ ଇଂରେଜ ସର୍କାର
ଦେଖି ବିଚକ୍ଷଣ ଜ୍ଞାନ ବୁଝି ଚମତ୍କାର
ଥର ଥର ଯାଚି ଦେଲେ ଉଚ୍ଚପଦବୀ କାମ
ଧନ ଲୋଭେ ଚାକିରିରେ ନବଳିଲା ମନ
ନଥିଲା ଯେଉଁକାଳେ ଦେଶେ ଅଜ୍ଞାନ ବିଭବ
ପରଦେଶୀ ଶାସନର ନାନା ପରାଭବ
ବୁଝିକି ହୃଷ୍ଟ ତେଣେ କେ ପିଇ ବସି ଥିଲେ ଲୋକ
ବିସ୍ତାର ନଥିଲା ଲଭି ଶିକ୍ଷାର ଆଲୋକ
ଜନ୍ମଭୂମି ଦୁଃଖ କ୍ଲେଶ ଭାଳି ମନେ ମନେ
ଧ୍ୟାନମଗ୍ନ ଥିଲେ ସତ୍ୟ ବକୁଳ କାନନେ
ଭାବୁଥିଲେ ଯାତ୍ରାପଥେ ହେବ କିଏ ସାଥୀ
ଏଇ ବାଟେ ଲୋଡ଼ାଖାଲି ବଡ଼ ବଡ଼ ରଥୀ
ଗୋଦାବରୀଶଙ୍କ ପରେ ପଡ଼ିଥିଲା ଆଖି
ଆସିବେ କେବେ ସେ ବୋଲି ବସିଥିଲେ ଚାହିଁ
କଥା ଦେଇଥିଲେ ତାଙ୍କୁ ଶ୍ରୀ ଗୋଦାବରୀଶ
ଅଧ୍ୟୟନ ପରେ ଫେରି ଆସିବି ଅବଶ୍ୟ
ଉତ୍କଳ ଜନନୀ ସେବା ଲାଗି ଦେବି ପ୍ରାଣ
ଦେବତା ମୋହର ଏହି ଜନ ସାଧାରଣ
ଏ ମହା ପ୍ରତିଜ୍ଞା ମନେ ବାନ୍ଧିଥିଲା ବସା
କଲିକତା ପାଠପଢ଼ା ସରିଲା ସହସା
ବାହୁଡ଼ି ଆସିଲେ ବାଣପୁର ଜନ୍ମ ପୀଠେ
ପୁରଜନ ଚାହିଁ ବସିଥିଲେଟି ଉତ୍କଣ୍ଠେ

ବନ୍ଧୁ ଅଗ୍ରୁ ନନା ବୋଝ ବୁଝିଥିଲେ ଆଖି
ସ୍ୱଦେଶ ରକ୍ଷଣୀ କାଳେ ନାହାନ୍ତି ସେ ଦେଖି
ନାହିଁ ଜମି ବାଡ଼ି ଧନ ପ୍ରାସାଦ ବିଭବ
ଚତୁର୍ଦ୍ଦିଗେ ଦରିଦ୍ରତା ରଚଇ ତାଣ୍ଡବ
ଅଭାବ ଭିତରେ କେମନ୍ତେ କୁଟୁମ୍ବ ପୋଷିବେ
ଏ ଭାବନା ମନ ମଧ୍ୟେ ନଛୁଇଁଲା ଲବେ
ପୂର୍ବର ପ୍ରତିଜ୍ଞା ବାଣୀ ହୃଦ ତଟେ ସ୍ମରି
ଫେରାଇଲେ ମିଳୁଥିବା ସର୍କାରୀ ଚାକିରୀ

\+ \+ \+

ଜୟ ବୈକୁଣ୍ଠନାଥ—

ଧନ ପାଇଁ ତଳେ ନଥିଲା ମମତା
ନ ବଳିଲା ଯୁବା ମନ
ଏତେ ବଡ଼ ହୁଆ ନଥିବ ଦେଖିଲେ
ବାଛିଲା ଦୁଃଖି ଜୀବନ
ପରକୁ ଆପଣା ପର ମନାସିଲା
ଆପଣାରେ କଲା ପର
ପରସେବା ବ୍ରତେ ତାଙ୍କ ଜୀବନ ଲୋ
ଝେଙ୍କିଲା ଜନମ ଧର

\+ \+ \+

ପଲ୍ଲୀ ପୁରଜନ ପାଶୁ ମାଗିଣ ମେଲାଣି
ସତ୍ୟବାଦୀ ପୀଠେ ଯାତ୍ରା ଆରମ୍ଭିଲେ ପୁଣି

ଯିବାବେଳେ ଜନ୍ମଭୂମି ସୋହାଗ ସକଳ
ଅନ୍ତରର ଅନ୍ତଃପୁର କଲକି ଆକୁଳ
ପୁଣ୍ୟଭୂଇଁ ବାଣପୁର ପଦେ ନୋଇଁ ମଥା
ଆକୁଳେ ବନ୍ଦିଲେ ଗାଇ ହୃଦ ମର୍ମ ବ୍ୟଥା

\+ + +

ପୁଣ୍ୟାତ୍ମାଙ୍କ ନିଜ ରଚନାରୁ —

ଯାଉଛି ଗୋ ମାଆ ଆଜି ଛାଡ଼ି ତୋ କୋଳ
ନିଜ ମନେ ଅରଜିଲି ବିଦେଶକୁ ମୋର
କି ଭଳି ବିଦେଶ ସେ ଯେ କି ସମ୍ପଦ ତହିଁ
ସୁଖ ଦୁଃଖ ଭଲ ମନ୍ଦ କିଛି ନ ଜାଣଇ
ଯେ ମୋହନ ଅନୁସରି ଯାଉଅଛି ଚାଲି
ତୋତେ ଛାଡ଼ି ଯିବା କି ଗୋ ସାର ହେଲା ଖାଲି
ଆଉ କି ମା' ନ ଗାଇବ ତୋ କୁଞ୍ଜେ କୋକିଳ
ମୋ ପାଇଁକି ନ ବହିବ କଳ କଳ ନୀର
ମେଘ ମାଳା ଗିରିଚୂଳେ ନ ଖେଳିବ ଆସି
ଦିଗନ୍ତ ମାଧୁରୀ ନଭେ ନ ଉଠିବ ଭାସି
ନ ହସିବ ସତେ ଆଉ ବନ ଦେଶେ ଫୁଲ
ମୋ ପାଇଁ ନାଚିବ ନାହିଁ କାନନେ ମୟୂର
ଏତେ ଶୋଭା ସୁଖ ମା ଗୋ ଏତେ ନିଧି ତୋର
ବିସ୍ମୃତିର ବକ୍ଷେ କି ଢାଳିଲ ନୁହେଁ ମୋର
ଯାଉଛି ମା ନାନା ସୁଖେ ରାଜ ହର୍ମ୍ୟେ ଥିଲେ
ଏ କୁଟୀର ଦୁଃଖକୁ ସେ ନ ଲଭିବ ଢଳେ
ମେଘାସନେ କପିଳାସେ ମହେନ୍ଦ୍ର ଶିଖରେ
କୋଣାର୍କ ସିକତା ବକ୍ଷେ ମହୋଦଧି କୋଳେ

ବୈତରଣୀ ଶଙ୍ଖୋପୃଳା ଚୂର୍ଣ୍ଣିକଳ୍ପା ତଟେ
ଯଦ୍ଧି ଯେବେ ଭ୍ରମୁଥିବ ପବଣ ଉପରେ
ସେତେବେଳେ ନେଇଁ ମୋର ଛାଡୁଥିବ ଦେହ
ମୋ ଶାଳିଆ ପଣ୍ଡିତା ଅସିଛୁ ମୁଁ ତେଜ
ତୋତେ ଗୁରୁ ମା ଗୋ ସତ ସହୁଛୁ ପ୍ରବାସେ
ମୋ ମନ ଜୀବନ ଗୋଟି ରହିଲା ତୋ ପାଶେ

\+ \+ \+

ସତ୍ୟବାଦୀ ପୀଠେ ପ୍ରବେଶି
ଧୀରେ ପବଣ ଛାଳି
କପୋଳେ ବୋଳିଲେ
ଉତ୍କଳମଣି ଚରଣ ଧୂଳି
ଯୁଟିଗଲେ ପୂଜ୍ୟ ଯୋଦ୍ଧର
ପଞ୍ଚ ସାଧନ ରତ
ମହା ମହା ରଥି ଶିକ୍ଷକ
କେଶେ ହେଲେ ଅଗତ
ଲଢିବାକୁ ହେବ କଉଳ
ଦୂର ଶାସକ ତୁଲେ
ବତାଇଲେ ବସି ବକୁଳ
ବନେ ତରୁଣ କୁଳେ

ଶିକ୍ଷକ ସୁଲଭ କର୍ମେ ବସା ଖର୍ଚ୍ଚ ନେଇ
ବନବିଦ୍ୟାଳୟୁ ପୀଠେ କାଳ ଯାଏ ବହି
ପରଦେଶୀ ସରକାର ସନ୍ଦେହ ସଙ୍କୁଳ
ବିଦ୍ୟାଳୟୁ ମଞ୍ଜୁରିରେ ହେଲେ ପ୍ରତିକୂଳ

ଗୋପବନ୍ଧୁ ଦାଶଙ୍କର ଚିତ୍ତ ଦୋଳାୟିତ
ଶ୍ରୀ ଗୋଦାବରୀଶ ଏଥି 'ହେଲେ ଅଗ୍ରଦୂତ
ଆଶୁତୋଷ ମୁଖାର୍ଜି ଯେ ଶିକ୍ଷାର ଅଧୀଶ
ସନ୍ନିକଟେ ଦେଖା ହୋଇ ଶ୍ରୀ ଗୋଦାବରୀଶ
ମଞ୍ଜୁର କରାଇ ନେଲେ ବନ ବିଦ୍ୟାଳୟ
ବର୍ଷ ବର୍ଷ ଛାତ୍ରସଂଖ୍ୟା ନୋହିଲା ଯେ ଅଳ୍ପ
ଛାତ୍ରଗଣେ ମଧୁମୟ ବଚନ ବଖାଣି
ତୋଷୁଥିଲେ ସଭିଙ୍କର ହୃଦମନ ଜାଣି
ରୋଗ ଶୋକେ ପଡ଼ିଲେ କେ' ପାଖେ ପାଖେ ରହି
ସେବୁଥିଲେ ଅନାହାର ଲୋତକ ଲୁଚାଇ

ଉଦାହରଣ ସ୍ୱରୂପ –

ବନବିଦ୍ୟାଳୟର ଜନୈକ ଛାତ୍ରଙ୍କର ମୃତ୍ୟୁଘଟଣା

ପଣ୍ଡିତଙ୍କର ନିଜ ରଚନାରୁ—

ରୋଗ ଶେଯ ପାଶେ, ବାରୁହେ
ଚାହିଁଥିଲି ମୁଁ ବସି
କ୍ଷଣୁ କ୍ଷଣେ ଏକୁ ବଦନ
ଆନ ଦଶିଲା ଆସି
ବନ୍ଧୁ ରଣ ପାଶୁ ନୟନେ
ହୋଇଗଲେ ଅନ୍ତର
ଯେତେବେଳେ ଜଣା ପଡ଼ି ସେ
ଗଲା ଅନ୍ତିମ ବେଳ

ମୁହିଁ ପାଶେ ବସିରହିଲ
ଏତେ ନିଠୁର ଜନ
ଜରେଖିଲ ଛାଡ଼ିଯିବାର
ଶେଷ ପ୍ରାଣ ପବନ
ଜଳହାତେ ଘରୁ ତୁରତେ
ଭାଗଦେଲ ଅନ୍ତର
ଜଳ କାନ୍ଦେ ପରି ବନ୍ଧୁ ମୁଁ
ନେଲ ବନ ଭିତର
ଜଳେ ମୁହିଁ ଚିତା ଅନଳ
ଦେଲ ଯତନେ ଜାଳି
ଯେହ୍ନ ତୁମ ଜଳା ଚିତାରେ
ଢଳେ ଆଆତ୍ମା ଜଳି
ବନ୍ଧୁଗଣ ମେଳେ ବାହୁଡ଼େ
ନେଲ ମହନେ ବନ୍ଧୁ
ଫେରିଲ ଯା, ପ୍ରାଣ ପ୍ରତିମା
ଦେଇ ବିସର୍ଜି କାହିଁ
ସେ ସକଳ କଥା ଏବେ ମୁଁ
ଭୁଲି ହେଉଛୁ ନିତ
ବନ୍ଧୁ ଏ ଭୁଲେଣି ସତେ ମୋ
ଯିବ ଜୀବନ ବିତ

---

ବଂଶୀଧର ନାମକ କଳାହାଣ୍ଡିର ଗୋଟିଏ ପିଲା ସତ୍ୟବାଦୀ ବିଦ୍ୟାଳୟକୁ ଆସିବାର ଅଳ୍ପଦିନ ପରେ ହଇଜାରେ ମରି ଯାଇଥିଲେ ।

କର୍ମ କ୍ଷେତ୍ରେ ବିଚକ୍ଷଣ କୁଶଳତା ଦେଖି
ଢନକରେ ଗୋପବନ୍ଧୁ ହୃଦୟରେ ତାଙ୍କ
ଗୋଦାବରୀଶଙ୍କୁ ଧୀରେ ସ୍ୱଷିଲେ ମଧୁରେ
ଥିବାପାଇଁ ସାଜନ୍ତୁ ଅ ଚକ୍ରଧର ପୁରେ
ତୁମ ବିନା ଆନ କେହୁ ନ ହେବେ ସ୍ୱଜନ
ହୃଦାନ୍ତ ଅଞ୍ଚଳି ପୁଣି ସେ ଦୁର୍ଗମ ସ୍ଥାନ
ସିଂହଭୂମି ସାର ଜିଲ୍ଲା ବିହାରୀ ପ୍ରଭାବେ
ମାତୃଭାଷା ମହାମୂଲ୍ୟ ଭୁଲିଲାଣି ଏବେ
ଅକୁଣ୍ଠିତ ଚିତ୍ତେ ମିଶ୍ରେ ହୋଇଲେ ବାହାର
ସହାସ୍ୟ ବଦନେ ଗଲେ ଚକ୍ରଧର ପୁର

ଚକ୍ରଧର ପୁର ଯାଇ          ବାଧା ବିପଦକୁ ସହି
ମାତୃଭାଷା ସେବା ପାଇଁ          ତତ୍ପର ହୋଇ ସେ
ବିଦ୍ୟାଳୟ ସଂସ୍ଥାପନେ          ମଗ୍ନହେଲେ ଶିକ୍ଷାଦାନେ
ସମ ହେଲା ଦୁଃଖ ସୁଖ          ମହା ସାଧକ ସେ
ଖାଇବା ଅଭାବ ଥିଲେ          ଆନକେ ନ ଜାଣେ ଭଲେ
ସେବା ବ୍ରତ ହେଲା ସାର          କଟାଇ କାଳ ସେ
କଂଗ୍ରେସ ମହାନ ବାର୍ତ୍ତା          ଗାନ୍ଧୀ ଉପଦେଶ କଥା
ପ୍ରଚାରିଲେ ଗ୍ରାମେ ଗ୍ରାମେ          କି ମନୋରମେ ସେ
ଉତ୍କଳୀୟ ଯାଇ ଯାଇ          ମହାମନ୍ତ୍ର ତତ୍ତ୍ୱ କହି
ଜଣାଇଲେ ପୁରଜନେ          ହରଷ ମନେ ସେ
ଦୂର ପରବାସେ କାହିଁ          ନଈ ପରବତ ଡେଇଁ
ଗାଁରୁ ଗାଆଁକୁ ବୁଲି          ଯାଆନ୍ତି ବୁଲି ସେ
ପୁଣି ଚକ୍ରଧର ପୁର          ହେଲା କେନ୍ଦ୍ର କର୍ମସ୍ଥଳ
ପାଶୋରି ଘର ଦୁଆର          ହେଲେ ବିଭୋର ସେ

ଘର କୁଟୁମ୍ବର ସୁଖ ଦୁଃଖ ଯା'ଇ ଭୁଲି
ସେବା ବ୍ରତେ ତନ୍‌ ମନ୍ ଥିଲେ କେଉଁ ଭଳି
ସ୍ୱପନ୍ଧ ଭାଙ୍କର ଲେଖା ଗାଇବ ଶୁଣିବେ
ପର ପାଇଁ ଘରଛଡ଼ା ଗୁଣକୁ ଗୁଣିବେ

ଜଗା ବୋଲି ଥିଲା ଗୃହର ଥିଲେ ସାଥିରେ ନେଇ
ନଥିଲେ ଜାନକୀ ପିଅର ସ୍ନେହ ଆଦର ପାଇ
ଘରେ ପିଲାପରି ଚଳି ସେ ଥିଲା ପିଲାଟି ଦିନୁ
ଦୂର ପରବାସେ ଘରର କଥା ନଭୁଲେ ମନୁ
ନ ଜାଣେ ପୂନଅଁ ଅଁାସ ପୂଜା ପର୍ବାଣୀ କିସ
ଚନ୍ଦ୍ରଧର ପୁର ରହିଣି ତାଙ୍କୁ ନଦଏ ତୋଷ
ସାଆନ୍ତାଣୀଙ୍କର ଆଦର ଦୟା ମନେ ସୁମରି
ପାଶୋରି ଦେଲନି ଜାଗାକୁ କହେ ନେତ୍ର ଭରି
ଜଗାକୁ ବୁଝାଇ ପଦେ କହିଥିଲେ ଯାହା
କୋଟି ଜନ ଜୀବନର ପଥେ ହେବ ସାହା

ପଣ୍ଡିତଜୀଙ୍କର ନିଜ ରଚନାରୁ—

କି ଭ୍ରମେ ପଡ଼ିଛୁ ପିଲାରେ
ବୁଝିନାହୁଁ କିକର
ଏ ମାୟା କଳ୍ପିତ ଜଗତ
ପ୍ରୀତ ସେନେହ ଖେଳ
ତୋ ଠାରୁଁ ଅଧିକ ଝୁଲେଣି
କରୁଥିବେ ମୋ ପାଇଁ
ମୋ ପ୍ରାଣ ଦୋସର ପ୍ରତିମା
ମୁହିଁ କାହାକୁ ନାହିଁ

ଜୀବନେ ମିଶାଇ ଜୀବନ

ମର ମଞ୍ଚରେ ଜନ

ମୋ ପ୍ରୀତି ବେଦୀରେ ହୃଦୟ

ଦେଇ ଅଛନ୍ତି ଜନ

ଲୁଚି ବସି ଶୂନ୍ୟ କୁଟୀରେ

କେହି ନଥିବା ବେଳେ

କେତେ ଚାହୁଁଥିବେ ନୟନୁ

ଅମର ଆସ୍ୱାଦ ଭରେ

କୋଳର ଅମୂଲ୍ୟ ରତନ

ପୁତ୍ର ଦୁହିତା ଗଣ

ଦେଖି ବଢୁଥିବ ସେ ବାଞ୍ଛ

ଧନୁ ଅଧିକ ଧନ

ମୁହିଁ ଗଲେ ପୁଣି କହିବେ

ଧନ ଜନକ କଥା

ଅଭିମାନ ଭରେ ମୋ ଅଙ୍ଗେ

ବେଗେ ନ ତୋଳ ମଥା

ସେହି ପିଲାମାନେ ଦେଖିଲେ

ଦୂର ଆସିବେ ଧାଇଁ

ଦୋ ଚାହ୍ଲା ଶର୍ଙ୍କି ଓ ଫକୋଟେ

ମୋରେ ବରିବା ପାଇଁ

ଦଗ୍ରେଷ୍ଟି ବଚନେ ଭଷିବେ

ବୃଥା ବାରତା କେତେ

ଗାଇ ଜନ୍ମ କରିଥିବାର

ମାଛ ମିଳିବା ସ୍ୱାର୍ଥେ

କିଅଛୁ ମୋର ସେ ସଂବାଦେ
ନାହିଁ ବୁଝିବେ ତଳେ
ସେନେହ ନର୍ଦ୍ଦର ଉଦ୍‌ବେଳେ
ବ୍ରହ୍ମସିବାର ବେଳେ
ଏତେ ସ୍ନେହ ମୋହ ପାଇଁରେ
ସେହୁ ଅଛନ୍ତ୍ର ପୋଷି
ତେତା ପାଇଁ ଢଳେ କି ଭଲେଣି
କରୁଥିବେ ସେ ବସି
ନ ଜାଣ ଅଜ୍ଞାନ ପିଲ୍ଲଟି
ମିଥ୍ୟା ବିଭ୍ରମେ ଭୁଲି
ତୁନ ହୁଅ ନେଇ ଅଞ୍ଚଳେ
ପୋଛୁ ଦେଉଛୁ ବାର

\+ \+ \+

ଊନବିଂଶ ଊନଶିରୁ ଚକ୍ରଧରପୁର
ମିଶ୍ରଙ୍କର ହେଲା ସେ ଯେ ପ୍ରିୟ କର୍ମସ୍ଥଳ
ଊନବିଂଶ କୋଡ଼ିଏରେ ଉତ୍କଳ ସମ୍ମିଳନୀ
ବସିଲା ସେ ଠାବେ ଖଇ ଧାରେ ଯାଅ ଶୁଣି
ପ୍ରସ୍ତାବ ଆଣିଲେ ପୂଜ୍ୟ ଗୋପବନ୍ଧୁ ଦାଶ
ଅସହଯୋଗ ଯାହା କହୁଛୁ କଂଗ୍ରେସ
ସାଦରେ ଉତ୍କଳୀ ଜନ କର ହେ ଗ୍ରହଣ
ଆଦରେ ମିଳିଲା ସଭ୍ୟଗଣ ସମର୍ଥନ
ଶ୍ରୀ ଗୋଦାବରୀଶ ମିଶ୍ର ପ୍ରବର ପଣ୍ଡିତ
ଏ ମହାସଭାର ଥିଲେ ମୁଖ୍ୟ ଭାଗୀ ସତ
ଦେଶସେବା ମହାପୁଣ୍ୟ ଭାବି ଅନୁସରି
ସେଦିନୁ ଅସହଯୋଗ ବ୍ରତ ନେଲେ ଧରି

ଗ୍ରାମେ ଗ୍ରାମେ ପୁରେ ପୁରେ ଦୃଢ଼ ଆନ୍ଦୋଳନ
ଆରମ୍ଭିଲେ ସାଥେ ଦେଶ ପ୍ରିୟ ଯୁବକଗଣ
ଯୁବକଆଁ ହୁଅନ୍ତି ଲୋକ ଦେଖିଲେ ଯୁଝିଆ
ସେକାଳେ ଗୋରାଙ୍କ ଭୂଲେ ଲଢ଼ିବାକୁ ଠିଆ
ହେବା ପାଇଁ ଜନଗଣେ ବୁଝାଇ ମଣ୍ଡାଇ
ଉତ୍କଳୀୟ ଭାବ ପୁଣି ଆଣିଲେ ରଞ୍ଜାଇ
କଂଗ୍ରେସ ପୀରତ୍ବ ଦେଖି ଗୋରା ସରକାର
ଓ୍ୱାରଣ୍ଟ ଜାରି କଲେ ମନ୍ତ୍ରୀଙ୍କ ଉପର
ତଥାପି ପୋଲିସ ଆସି ନେଲେ ନାହିଁ ଧରି
ଭିତର କାରଣ ଯାହା ଜାଣନ୍ତି ଶ୍ରୀହରି
ସେ ସମୟେ ସିଂହଭୂମି ସମଗ୍ର ଜିଲ୍ଲାରେ
ବାଉନ ଶହ କଂଗ୍ରେସ-ସଭ୍ୟ ,ରହିଥିଲେ
ଜିଲ୍ଲା କଂଗ୍ରେସରେ ପଡ଼ିଗଲା ହଇଚଇ
ବିହାର ପ୍ରଦେଶ ପ୍ରାନ୍ତ ହୃଦତଟେ ବନ୍ଧୁ
ରାଜେନ୍ଦ୍ର ଗର୍ଜିଲେ ଏହା ହୋଇବ ଅବଶ୍ୟ
ସିଂହଭୂମି ଜିଲ୍ଲା ସଙ୍ଗ ବିହାର ପ୍ରଦେଶ
କଂଗ୍ରେସର ଅନ୍ତର୍ଭୁକ୍ତ ହୋଇବ ନିଶ୍ଚୟ
ଶ୍ରୀ ଗୋଦାବରୀଶ ଏଥି ରଚିଲେ ଉପାୟ
କଂଗ୍ରେସ ଉପର ପୀଠେ ହେଲା ଭିଡ଼ାଟଣା
ଭୋଟ ସାହାଯ୍ୟରେ ଲୋକମତ ଯାଉ ଜଣା
ଷୃଡେଶି ହଜାର ଭୋଟ ପାଇଲା ଉତ୍କଳ
ବିହାର ପାଇଁକି ପ୍ରାୟ ହଜାରେ କେବଳ
ସିଂହଭୂମି ଜନମତ ଦୃଢ଼ ସଂଗଠନେ
ଗୋଦାବରୀଶଙ୍କ ନିଷ୍ଠା ଚରିଲା ଭୁବନେ
ଏ ସମ୍ବାଦ ଶୁଣି ବୀର ରାଜେନ୍ଦ୍ର ପ୍ରସାଦ
ଚକ୍ରଧରପୁରେ ଆସି ପକାଇଲେ ପାଦ

ତାଙ୍କ ଜନସଭାରେ କରିଲେ ଘୋଷଣା
ସିଂହଭୂମି ଜନମତ ପଡ଼ିଅଛି ଜଣା

ତେଣୁ ସିଂହଭୂମି ଜିଲ୍ଲା କଂଗ୍ରେସ କମିଟି
ଉତ୍କଳପ୍ରଦେଶ ରହୁ ବାହାରକୁ କଟି

ପଣ୍ଡିତଙ୍କ କରିଥିଲେ ଯେଉଁ ଆନ୍ଦୋଳନ
ସଫଳ ହୋଇଲା ତହିଁ ମିଳିଲା ପ୍ରମାଣ

ବହିଗଲା କେତେ କାଳ ସ୍ୱାଧୀନତା ପରେ
ମନ୍ତ୍ରୀ ହୋଇ ବସିଲେ ଯେ ଆମ ଓଡ଼ିଶାରେ

ନିଜ ପଦ କରିବାକୁ ଦୃଢ଼ଁ ଦୃଢ଼ତର
ରାଜେନ୍ଦ୍ରଙ୍କୁ ସିଂହଭୂମି ଅର୍ପିଲେ ନିକର

କେ ଆଣିଲା କିଏ ଦେଲା ତତ୍ତ୍ୱେ ନେଇ ମତ
କାଲେ କାଲେ ବୁଝିବକି ଓଡ଼ିଆ ସନ୍ତତି ?

ଉପାନ୍ତ ଅଞ୍ଚଳେ ଘନ, ବନ ଗିରିପଥେ
ଜନସେବା ସଂଗଠନେ ହନୁହନ ଖଟେ

( ଏଭଳି ପରିସ୍ଥିତିକୁ ଲକ୍ଷ୍ୟ କରି ଆମର ସେତେବେଳର ଶିକ୍ଷାମନ୍ତ୍ରୀ ଶ୍ରୀଯୁକ୍ତ ରାଧାନାଥ ରଥ ଲେଖିଥିଲେ – )

ବନ ଗିରି ନଦୀ ପ୍ରାନ୍ତର
ଗ୍ରାମ ଜଙ୍ଗଲ ମାଳେ
ଜୀବନ ବିତାଇ ମଣିଲି
ତାର ଶୋଭା ସମ୍ଭାରେ

ତାଙ୍କ ପାଇଁ କେତେ କାନ୍ଦିଲ
କେତେ ସ୍ନେହ ମମତା
ବନ ବନକର ଘଟଣା
ଦୂର ଅତୀତ କଥା
ମନରେ ପକାଇ ଝୁରିଲ
ତୁମ କବିତା ଧାରେ
ତୁମ ପଶ କେହ୍ନ ନ୍ଦେହ୍ନ କେହ୍ନ କ
ଅଛୁ ଏଇ ମଞ୍ଚରେ ।

+ + +

(ପୁଣ୍ୟାତ୍ମା କଭଳ ମନେପକାଇ ଝୁରୁଥିଲେ
ତାଙ୍କ ନଜ ଲେଖାରୁ ପ୍ରମାଣ ମିଳେ—)

କେତେ ଦୂର ଡେଙ୍କ ନଠୂରେ
ଆସି ରହିଲି ଏଥି
କେତେ ଊଷା ସନ୍ଧ୍ୟା ଏଠାବେ
ନଢ ଯାଉଛୁ ବଢ
ଗୁହିଁଥିବ ବୋଉ ବାଟ ମୋ
ଧନ ଆସିବ ପଗ୍ଭ
କାହିଁ ବୁଲୁଥିବ ବନସ୍ତେ
କାହ୍ନୁ ନାହିଁ କ ଖଗ୍ଭ
ଭଳ ଏତେ ହୃଦେ ଭୂରତେ
ସ୍ନାନ ସମାଧ ହେଲେ
ଫେର ଯାଉଥିଲି କୁଟୀରେ
ରବ ମଧ୍ୟାହ୍ନ ବେଳେ

କାହିଁ ଭୁଲିଥିଲୁ ବାବୁ ମୋ
ଏତେ ଉତ୍ତର ଯାଏ
ଶୁଖି ଯାଇଅଛୁ ବଦନ
ବାସି କଇଁଟି ପ୍ରାୟେ

ଭଣି ମଧୁ ସ୍ୱରେ ଜନନୀ
ଧୀରେ ଆଲିଙ୍ଗି ମୋରେ
ବାଢ଼ି ଭାତ ହାତେ ଖୁଆନ୍ତ
ସ୍ନେହେ ବସାଇ କୋଳେ

ଚଉଦ ବରଷ ପଣକ
ହେଲା ଆଜକୁ ମୋର
ନ ଶୁଣିଲି ଥରେ ଶ୍ରବଣେ
ସେଇ ସେନେହ ଗୀର

କେତେ ତ ଉତ୍ତର ହେଉଛୁ
ମୁହଁ ଯାଉଛୁ ଶୁଖି
ଭୋକ ଶୋଷେ ହଂସା ହଉଛୁ
ଫୁଟି ଯାଉଛୁ ଆଖି

ଆହା ବୋଲିବାକୁ ଥରେ ମୋ
ଜଣେ କେହୁ ତ ନାହିଁ
ଛାଡ଼ି ଏକା ମୋତେ ଏ ମର୍ତ୍ତ୍ୟେ
ବୋଉ ଗଲୁ ରୁ କାହିଁ

କାହିଁ ଯାଇ ମାଆ ରହିଲୁ
କେଉଁ ସୁ ଦୂର ଦେଶେ
ଶୟନେ ସ୍ୱପନେ ନ ଦେଲୁ
ଦେଖା ନିଶି ଦିବସେ

ଶ୍ମଶାନ ପାଉଁଶ ଦେଖିଲେ
ଭୋରେ ପଡ଼ଇ ମନେ
ସେ ତନୁ ମିଶାଇ ଦେଲୁ ଯା
କ୍ରୂର ଶ୍ମଶାନଭୂମେ
ବିଦେଶ ଯିବାର ବେଳେ ମୋ
ଜାଏ ଭଉବ ଅଳି
ଦୁଆର ଆଢୋଳ ବସିବ
କାହିଁ ଛାଡ଼ିବ ବୋଲି
ନ ମାନ ମାଆ ମୁଁ ଆସିଲି
ଛାଡ଼ି ଏକାକି ଘରେ
ଫେରି ପୁଣି ଭେଟ ନୋହିଲା
ମର ଅବସ୍ଥା ତଳେ ।

\+ + +

ସିଂହଭୂମି ସେବାବ୍ରତେ ଗଲା କେତେ କାଳ
ଚଳେ ସ୍ମର ଜନ୍ମଭୂମି ଯୋହ୍ଲାଗ ସକଳ
ବାହୁଡ଼ିଲେ କାଶ୍ମୂର ମନେ ବାନ୍ଧ ଆଶା
ଜନ୍ମମାଟି ସେବା ରଚ ମେଣ୍ଟିବ ପିପାସା
ଭଟସିବ ଦନ ଅବା ସୁଖ ଶରଧାରେ
ତଥାପି କଟିଲା କାଳ ଦ୍ୱନ୍ଦ୍ୱ ବାଧାରେ
ମାତୃଶ୍ରାଦ୍ଧ ବାଢିବାକୁ ନହେଲେ ସ୍ୱଜନ
ଶ୍ରଦ୍ଧାଭରେ ନେତ୍ରନୀର କଲେ ବିମୋଚନ

\+ + +

ଅଭାବଗ୍ରସ୍ତ ଉତ୍କଳରେ ପୁଣ୍ୟାତ୍ମା ଗୋଦାବରୀଶ ମାତୃଶ୍ରାଦ୍ଧ ଅବସରରେ ନିଜର ଅନୁଭୂତି ବର୍ଣ୍ଣନା କରିଛନ୍ତି—

କେତେ ଦୂର ବଢ଼ିଗଲା ସତର ବରଷ
ଆଜି ବୋଉ ପାଳୁଛି ମୁଁ 'ତୋ ଶ୍ରାଦ୍ଧ ଦିବସ
ଯେବେ ବୁଜିଗଲୁ ମୂଢ଼ ନୟନ ଯୁଗଳ
ନ ଦେଖିଲି ଗଡ଼ାଇଲି କେତେ ଅଶ୍ରୁଜଳ
ବୟସେ ବାଳୁତ ଥିଲି ସଂସାର ଯନ୍ତ୍ରଣା
କୋମଳ ପରାଣେ ମୋର ନଥିଲାଟି ଜଣା
ଓପାଦେ ବଢ଼ାଇଥିଲୁ କୋଳୁ ନ ଓହ୍ଲାଇ
ବୁଲିଗଲା ବେଳେ ମନେ ପଡ଼ିଲା କି ନାହିଁ
କହୁ ନାହୁଁ ଡାକି ପଦେ ବିଦାୟ ବଚନ
ସେ ଶୂନ୍ୟତା ଭରନ୍ତି ପିତା ମୋତେ ଆଶ୍ୱାସନ
ଦୁଃଖିଘର ସମ୍ପଦ ତୋ ସ୍ନେହମିଶା କଥା
ସେ ସମ୍ପଦୁ ବଞ୍ଚିତ କେ ସହିପାରେ ବ୍ୟଥା
ଆଜି ତ ଅଟଇ ଗହ୍ମା ପୁନେଇଁ ଉତ୍ସବ
ଶୁଭୁଛି ଚୌଦିଗେ ପୂଜା ଘଣ୍ଟା ବାଦ୍ୟରବ
ହାସ୍ୟରୋଳ କୋଳାହଳେ ଉଲ୍ଲସିତ ମଠ
ପିଠାପଣା ଖାଇ ଲୋକେ ଲଭନ୍ତି ତୃପତ
ତା ମଧ୍ୟେ ବସିଛି ବୋଉ ମୁଁ ତୋ ଶ୍ରାଦ୍ଧ ପାଇଁ
ପିଣ୍ଡଦାନେ ଲବେ ମୋର ଉପାଦାନ ନାହିଁ
ଦୁଇ ଦିନ କଟାଇଛୁ ଖାଇ ପୋଡ଼ା ତାଳ
ଆଜିକି ପାଳିଟି ଯିବ କାଲିର କପାଳ ।
ମୋ ଲାଗି ମୋର ତ ନାହିଁ ତିଳେ ଚିନ୍ତା ମନେ
ଜନକର ବରଣ ଏ ମୋ ଏ ମର ଜୀବନେ ।

ଯୋଡ଼ା ତାଳେ ଶ୍ରାଦ୍ଧ ମାର ବନ୍ଧୁବ କେସନ
ତା ପୁଣି ଅଛୁବ ପିଲ୍ମ ସ୍ୱାତ ଛୁଆଁ ଧନ
ପିଣ୍ଡଦାନେ ଲଭେ ବେ'ଦ୍ର ପ୍ରତ୍ୟୁଷୁ ମୋ ନାହିଁ
ବାଢ଼ଇ ପିଣ୍ଡ ମୁଁ ସିନା ଲେକାଙ୍କର ପାଇଁ
ତୋ ଶ୍ରାଦ୍ଧ ଏବେ ମୁଁ କରେ ନଷ୍ଟ ଅଶ୍ରୁ ଜଳେ
ସ୍ମୃତି ତୋର ଚନ୍ଦେ ମୋର ଝର୍ଝବା ମାତରେ
ସେତେବେଳେ ତୋ ମୂରତି ଦଶଇ ନୟନେ
ତୋ ସ୍ନେହ ଆଶିଷ ବୋଉ ଲଭଇଁ ଜୀବନେ
ରହୁଥା ସନ୍ତୋଷେ ବୋଉ ତୋ ପୁର ନବାସେ
ପୁତ୍ର ନେଇ ନାରେ ଶ୍ରାଦ୍ଧ ଅନ୍ତର ଆସ୍ୱାସେ
ମାତୃସ୍ନେହେ ବନ୍ଧା ଏକା ସୃଷ୍ଟି ପରମେଶ
ସେନେହୁ ସ୍ୱରଗ ଜନେ ମଣୁଛନ୍ତି ଧରା ।

\+ + +

ନାନା ବାଧା ପ୍ରତିରୋଧ ଯାଷାପଥେ ଡେଇଁ
ଫଟଣ କରିଲେ ଟେଲିକାର ବେଲାଭୂଇଁ
ଛବିଲ ଖ୍ୟାଳିଆ ଙ୍ଗାର ଘଣ୍ଟ ଆମ୍ଭ ବନେ
ଜାତୀୟ ଶିକ୍ଷାନୁଷ୍ଠାନ ଆସିଲେ ଯତନେ
ଗଢ଼ିଲେ ଦଳକୁ ଦଳ ସ୍ୱେଚ୍ଛାସ୍ୱୀ ତରୁଣ
ଦେଶ ପାଇଁ ଯେ କରିବେ ମରଣ ବରଣ
ଶିଳ୍ପକଳା ବିକାଶରେ ବଳାଇଲେ ମନ
ଜୁଆଁସିଲ୍ପି କାରଖାନା ହୋଇଲା ସ୍ଥାପନ
କଳତନ୍ତ୍ରେ ବସ୍ତ୍ରନର କଳା ଶିକ୍ଷା ଲାଗି
ଛାତ୍ରଗଣ ଯେ ଯତ୍ନିକ ହେବେ ଅନୁରାଗୀ
ବୈଷୟିକ ଧନ୍ଦା ଶୁଳେ ବିଦ୍ୟା ନାନା ବିଧି
ଅଳ୍ପକାଳେ ବିଦ୍ୟାଳୟ ଲଭିଲା ପ୍ରସିଦ୍ଧି ।

ଦେଶାତ୍ମବୋଧରେ ମନ୍ତ୍ରି ଉତ୍ସର୍ଗିବେ ପ୍ରାଣ
ଶୃଙ୍ଖଳ ଖୋଲାରେ ଯେତ୍ନେ ନ ବଳିବ ମନ
ପରାଧୀନ ନୋହୁ ହେବେ ସ୍ୱାଧୀନ ସତନ୍ତ୍ର
ଏଭଳି ତରୁଣଙ୍କର ଶୃଙ୍ଖଳ ପ୍ରସ୍ତୁତ
ସହଜେ ତ ଡ଼ିଆସିଲା ବାରୁଦ ବେଗର
ତା ସାଥିରେ ଉଟକେ ଷଡଯନ୍ତ୍ର ମୂଳ
ଶ୍ରୀ ଗୋଦାବରୀଶ ବଙ୍ଗ ବିପ୍ଳବୀ ମଣ୍ଡଳେ
ଗୋପନୀୟ ସଭ୍ୟ ଜଣେ ଜଣା ସରକାରେ,
କୋଠରୀ ନମ୍ବର ନଅ କଲିକତା ପୀଠେ
ବୋମା କାରବାର ଶଶୀ ଦାଦା ଯୋଗସୂତ୍ରେ
ଡ଼ିଅ.ସିଲ କାରବାରେ ବଙ୍ଗୀୟ ଯୁବକ
କର୍ମଚାରୀ ଭାବେ ଥିଲେ ବିପ୍ଳବୀ ସୂଚକ
ତେଣୁ କାରଖାନା ପ୍ରତି ଗୋରାଙ୍କ ସନ୍ଦେହ
କି' କାରଖାନା ଚାଲିଛି ହୋଇଲେ ଅଥୟ
ଷଡଯନ୍ତ୍ର ଅଭିଯୋଗେ ନେଇଥିଲେ ଧରି
ତଥାପି. ସ୍ୱଦେଶ ପ୍ରୀତି ନ ପାରିଲା ମରି
ବାଲୁକେଶ କର୍ମକ୍ଷେତ୍ରେ ବହିଯାଏ ଦିନ
ରାଷ୍ଟ୍ର ପିତା ମହାତ୍ମା ଗାନ୍ଧି ଆଗମନ
ଅତିଥି ହୋଇଲେ ଆସି ମିଶ୍ରଙ୍କ କୁଟୀରେ
ବିପୁଳ ଜନତା ଠୁଳ ଶାଳିଆର କୂଳେ
ପୋଲିସ ଆକଟ ଯେତେ ଫାଟିଗଲା ପାଣି
ଗାନ୍ଧି ପାଶେ ଏ ଅଞ୍ଚଳ ବେଦନାର ବାଣୀ
ଶୁଣାଇଲେ ଆଦିବାସୀ ବ୍ୟଥା ଚାଷୀ ଦୁଃଖ
ହାକିମ ଜୁଲୁମ ବୋଝେ ନଇଁଯାଏ ବେକ
ଗାନ୍ଧିଜୀ ମଣୋହି ଲାଗି ଦ୍ରବ୍ୟ ଫଳ ରସ
ଯୋଗାଡ଼ି ଥୋଇଲେ ଆଣି ଶ୍ରୀଗୋଦାବରୀଶ

ନ ଛୁଇଁଲେ ଗାନ୍ଧି ତନ୍ତୁଁ କରିବାଏ ଫଳ
ଉପବାସେ ନଶି କଟେ ବଚନ ବେଷ୍ଟର

(ଏହି ଘଟଣା ଉପରେ ପଣ୍ଡିତଜୀଙ୍କର ଉପବାସେ କବିତା )

## ଉପବାସେ

ପନ୍ଦର ହଜାର ବାଣପୁରବାସୀ
ବାଟ ରହିଥିଲେ ଚାହିଁ
ବଳେ ହେବେ ଆସି ନିଖିଳ ଭାରତ-
ସ୍ୱରାଜ୍ୟ ସମର-ସାଇଁ ।

ସାତ ଦିନ ତଳୁ ହାକିମ ହୁକୁମା
ମନା କରିଛନ୍ତି କେତେ,
ଗାଉଁ ଗାଁ ବୁଲି କେତେ କହୁଛନ୍ତି
ପିଠି ଫଟାଇବେ ବେତେ ।

ତେବେହେଲେ ଜଣେ ମାନିଲା ନାହିଁ ତ
ସର୍ବେ ଏକଠାବେ ରୁଣ୍ଡ
ପନ୍ଦର ହଜାର ବାଣପୁରବାସୀ
ଗଣି ଯେ ନହୁଏ ମୁଣ୍ଡ ।

ବଳେ ହେଲେ ଶୁଭ ଦବସେ ଅଛଥି
ମଣ୍ଡିଲେ ସଭା ମଣ୍ଡପ,
ଚଉପାଶୁ ଜନେ ଲଭିଲେ ଦର୍ଶନ
କେବେ କରୁଥିବେ ତପ

ବନବାସୀ ଜନେ    ପ୍ରଣମିଲେ ପଦେ
ସମର୍ପି ବନସ୍ଥ ଫଳ
ମନ୍ତ୍ରୀ ଯା ତାଙ୍କର    ନିତ୍ୟ ଖାଦ୍ୟ ସିନା
ଅପରେ ଅରୁଚିକର ।

ସେଦିନ ସାୟାହ୍ନେ    ଅତିଥିଙ୍କ ଲାଗି
ଆସିଲା କମଳା-ରସ,
ନାଲି ଟହ ଟହ    ସୁବାସ, ମଧୁର
କଲେ ସେ ନାହିଁ ସ୍ପରଶ ।

କହିଲେ, "ଶୁଣିଲି    ସୁଦୂର ନଗରୁ
ଆଣିଛ କିଣି କମଳା,
ଦର୍ଲ୍ଲୀଜନ ଖାଦ୍ୟ    ଖୁଆଅ, ଆସିଛୁ
ପଲ୍ଲୀବାସେ ମୁହିଁ ପର ।
ବନ ଜନେ ଆଜ    ଭେଟିଛନ୍ତି ଯାହା
ଉଦର ତୋଷିବ ତହିଁ,
ତେବେ ସିନା ତାଙ୍କ    ମେଳାପେ ଏ ଠାବେ
ସୁଖେ ମୁଁ ପାରିବ ରହି ।"
ମୁହିଁ ତେବେ ସ୍ଥିର    ହେଲେ, ଏ ଜୀବନେ
ସେ ଫଳ ନଥିଲି ଚାଖି
କିପରି ଅର୍ପିବ    ଅତିଥି ବରଙ୍କୁ
ବୁଜି ହୋଇଗଲା ଆଖି ।
ସେତେ ନାସ୍ତି କଲ    ଧଇଲେ କଟାଳ
ବୁଝାଇ କହିଲେ ବାଣୀ
ମୁଁ ଏହା ମଣୁଛି    ଏକ ମହାପାପ,
କିପରି କରିବ ଜାଣି ?

କହୁଛୁ ଏ ଜନେ     ଏତେ ଦୁଃଖୀ ସତ୍ତ୍ୱେ
ତୁଣ୍ଡେ ନଛୁଆଁନ୍ତି ଅନ୍ନ,
ତାଙ୍କ ମେଳେ ରହି     ରଜା'ର ମଣୋହି
କରିବାକୁ ଯିବ ମନ ?
ତାଙ୍କ ଭେଟି ଦ୍ରବ୍ୟ     ନ ରୁଚିଲେ ମୋତେ
ମନେ ମୁଁ କରିଛୁ ସ୍ଥିର
ଉପବାସେ ଆଜ     କଟି ପୁହାଇବ
ଛୁଇଁ ମାତ୍ର ତୁଣ୍ଡେ ନୀର ।
ଉପବାସେ କଟି     ଯାପିଲେ ଭାରତ-
ମୁକ୍ତିବାହିନ ନାହା,
ପଣ ତାଙ୍କ ନାହିଁ     ଭୁଞ୍ଜିବେ ଦରିଦ୍ର
ପ୍ରଜା ନ ପାଆନ୍ତି ଯାହା ।

+ + +

ବାଣପୁର ବାସୀଙ୍କର ଅଭାବ ମୋଚନ
କରିବା ପାଇଁକି ପୁଣି ବଳାଇଲେ ମନ
ଉପାନ୍ତ ଅଞ୍ଚଳେ ଦିନ ଯାଇଥିଲା ଚାଲି
କାହିଁ ଫଲ୍ଟର ବନ୍ଦ୍ରା ଯଶପୁରେ ବୁଲି
ଉପରେ ବୈଶାଖି ଖରା ତଳେ ଫୁଟେ ଖଇ
ସାଇକେଲ୍ ଖଣ୍ଡିକରେ ବେଳ ଯାଏ ବହି
ମୁଣ୍ଡରେ ଗାମୁଛା ଓଢା ଖାଇବା ସରାଗ
ନଥିଲା ବିଶ୍ରାମ ସୁଖ ସୌଖ୍ୟ ଅନୁରାଗ
କାହିଁ ଚୁଡ଼ା ମୁଠି ଅବା ଯାହା ମିଳେ ସହିଁ
ସୁଖ ଅବା ଦୁଃଖ ସହି ଭାବନା ନଥାଇ
ବିହାର ମାନ୍ଦ୍ରାଜ ମଧ୍ୟପ୍ରାନ୍ତ ଅନ୍ତର୍କୃତ
ଅଞ୍ଚଳର ଓଡ଼ିଆଙ୍କୁ କରାଇ ଜାଗ୍ରତ

ହୋଇଲେ ପଢ଼ୋଶୀ ପଦେ ମୁଣ୍ଡଦେଇ ଶଙ୍କା
ବଗ୍ରଟ ଓଡ଼ିଆ ଜାତି ନକାଶ ହେବା କି ?
ଏ ଗୋଟିକ ପ୍ରଶ୍ନ ଯାହା ଘୂରୁଥିଲା ମନ
ଓଡ଼ିଶାର ପ୍ରାନ୍ତେ ପ୍ରାନ୍ତେ ଭ୍ରମି ବହୁଦିନ
ସନ୍ତୁଷ୍ଟଲେ ଆସିଯେବେ ଜନ୍ମଭୂମି ପୀଠେ
ଶିକ୍ଷାର ଅଭାବ ଅନୁଭବି ହୃଦତଟେ
ଗଢ଼ିଥିଲେ ସାଧନାର ଆଦର୍ଶ ନିପୁଣ
ଜାତୀୟ ଶିକ୍ଷାନୁଷ୍ଠାନ ହୁଏ ମ୍ରିୟମାଣ!
ବସୁରତ୍ନ ଜଣେ ଯଦି ପଢ଼ିଲି ମୁଁ ପାଠ
ଏଥିକରେ ଘୁଞ୍ଚିବକି ଦେଶର ସଂକଟ
ଜନ୍ମଭୂମି ଲାଗି ଯଦି ଜଣେ ମୁହିଁ ଲଢ଼ି
ସରକାର ସମୀପରେ ଦୁରବସ୍ଥା ବାଢ଼ି
କହିଲି ଧାତବି ଅବା କିଛୁ କିଛୁ କାମ
ସେତିକରେ ଏ ମାଟିର ରହିବକି ମାନ
କୂଅ ନାହିଁ ନାହିଁ କାହିଁ ପୋଖରୀ ସଡ଼କ
ବନ୍ୟା ସଙ୍ଗେ ପଡ଼ିଅଛି ମରୁଡ଼ି ମଡ଼କ
ଏଣିକା ଭାଙ୍ଗିବା କାମ ଜଣେକରେ ନୁହେଁ
ଯାହା ବା କରିବ ଜଣେ ବଞ୍ଚିଥିଲା ଯାଏ
ତେଣୁ ଏ ମାଟିର ଲୋଡ଼ା ସହସ୍ରେ ଯୁବକ
କାଳେ କାଳେ ରଖିବେ ଯେ ବାଣିପୁର ଟେକ

ଆପଦ ବିପଦ ଯେବେ ଆସିବ ମଝିରେ
ସ୍ତମ୍ଭିତ କରିବେ ଧରି ସର୍ବେ ଏକ ହିରେ
ଅଭାବ ଅଭିଯୋଗ ଯାହା ପାରୁଥିବେ ବୁଝି
ସରକାର ସମ୍ପର୍କରୁ ଆଣୁଥିବେ ଯୁଝି
ଏ ସବୁ ପାଇଁକି ଲୋଡ଼ା ପ୍ରଥମରେ ପାଠ
ପାଠ ନଥିଲେ କି ଚଳେ ରାଜନୀତି ହାଟ

ପାଠ ନ ପଢ଼ିଲେ କେବେ ଫିଟଇନ୍ନ ପାଟି
କଥା କେ ପାରଇ କହି ଜିଭ ଦେଲେ କାଟି
ତେଣୁ ବାଣପୁର ପୀଠ୍ ଅଜ୍ଞାନ ଅନ୍ଧାର
ଦୂର କରିବାକୁ ନେଇ ଶିକ୍ଷାର ପ୍ରସାର
ଗରିବର ଦୁଃଖ ସିନା ଗରିବ ବୁଝଇ
ଧନୀ କି ପାରଇ ବୁଝି ନିଜ ପ୍ରାଣ ଦେଇ
ଅକୁଣ୍ଠିତେ ଗୃହସୀମା ଜନ ସାଧାରଣ
ଢାଳି ଦେଲେ ପଦତଳେ ଧନ ଜନମନ
ଅଳପକେ ଉଚ୍ଚ ବିଦ୍ୟାଳୟ ହେଲା ଗଢ଼ା
ମଣିଷ ତିଆରି କଲା ଗୃହେ ପ ଠପଢ଼ା
ଥିବାରୁ ସେ ସୁମହତ ଶିକ୍ଷା ଅନୁଷ୍ଠାନ
ଗୃହ ସୀମା ଧରି ଆଜି ଶିକ୍ଷିତ ତରୁଣ

ଶୋଭି ପାଇ ନାହାନ୍ତି କି ଏ ସାରା ମୁଲକେ
ଗଳା ମୋତିମାଳା ସମ ଜନ୍ମଭୂମି ବୁକେ
ଜନତାର ଦୁଃଖ ସୁଖ ଜାଣନ୍ତୁ ଇଂରେଜ
ଆରମ୍ଭିଲେ ଲୋକ ମୁଖ ଖବର କାଗଜ
ବହୁକାଳ ଧରି ଜିଲ୍ଲାବୋର୍ଡ଼ର ମେମ୍ବର
ଭାବେ ରହି କଲେ କାମ ଜନହିତକର
ବିହାର ଓଡ଼ିଶା କାଉନ୍‌ସିଲ୍ ସଭ୍ୟ ରହି
ଯାହା କିଛି କରିଛନ୍ତି ଠିକେ ସିବ କହି

ନୂତନ ଓଡ଼ିଶା ଦେଶ ଗଠନ ପାଇଁକି
ବସିଲା ସହଜେ ସୀମା ତଦନ୍ତ କମିଟି
ନିଜକୁ ସେ କମିଟିରେ କରିଲେ ମେମ୍ବର
ଖଞ୍ଜି ଥିଲେ ନବୋତ୍କଳ ଗଠନ କୌଶଳ
ଅନୁନ୍ନତ ଜିଲ୍ଲା ଥିଲା ସେ ସମ୍ବଲପୁର
କାଟି ତାକୁ ଅଣାଇଲେ ଉନ୍ନତ ପଥର

କାହା ଲାଗି କାଉନସିଲେ ନଥିଲା ହେ ସ୍ଥାନ
ମନ୍ତ୍ରୀ ବାଣ୍ଟି ବଦଳାଇ ଥିଲେ ସମ୍ବିଧାନ
କମିଶନର ଅଧୀନେ ଥିଲା ଏ ଓଡ଼ିଶା
କମିଶନର ପଦ ଭଲ କଟିଲା ସହସା
ଦେବୋତ୍ତର ସମ୍ପତ୍ତିର ରକ୍ଷା ଲାଗି ଭଲ
କମିଟି ଗଢ଼ିବା ବିଧି ମନ୍ତ୍ରୀର ହୋଇଲା
ରାଜନୀତି ବନ୍ଦୀଙ୍କୁ ଯେ ମୁକ୍ତି ଦେବାପାଇଁ
କାଉନସିଲେ ମନ୍ତ୍ରୀର ଯେ କରିଥିଲେ ରାଇ
ଓଡ଼ିଶାର ରାଜବନ୍ଦୀ ବିହାର ଜେଲରେ
ବିହାରୀ ଖାଦ୍ୟରେ ମହାକଷ୍ଟ ପାଉଥିଲେ
ଓଡ଼ିଶା ଖାଦ୍ୟ ପାଇଁକି କଲେ ମନ୍ତ୍ରୀରୁ
ଯାରକୁଦକୁ ରଖିଲେ ବଢ଼ିର ତାହାରୁ
ଲୁଣ ବନ୍ଧ ପାଇଁକି ସେ ଢଆଇଲେ ଟଙ୍କା
କଥାରେ ସାହେବ ମୁହଁ କରିଦେଲେ ବଙ୍କା
ଜଙ୍ଗଲ ଆଇନ ଦେଲେ କୋହଳ କରାଇ
କାଠ ଓ ବାଉଁଶ ଲୋକେ ପାଉଥିଲେ ନେଇ
ଗୋରା ଗଭର୍ଣ୍ଣର ରୁଲେ ଦେଖା କରିବାରେ
ପୋଷାକର କଟକଣା ଥିଲା ଏ ଦେଶରେ
ସାହେବଙ୍କ ମେର ରସ୍ତୁ ନ ପାରିଣ ସହି
ସେ ଆଇନ ଲାଢ଼ି ଲଢ଼ି ଦେଲେ ବଦଳାଇ
ଏଇଭଳି ନାନା ବିଧି ଜନହିତକର
ପ୍ରସ୍ତାବ ମଞ୍ଜୁର କଲେ ସେ ଲାଆଟସାହାର
ଊନବିଂଶ ଛତିଶ ଏପ୍ରିଲ ପହିଲା
ଦିନ ଏ ଓଡ଼ିଶା ଭୂଇଁ ସ୍ୱତନ୍ତ୍ର ହୋଇଲା
ନୂତନ ପରାମର୍ଶଦାତା କମିଟିରେ
ସଭ୍ୟ ରୂପେ ବସ୍ତୁ ହୋଇଥିଲେ ସହଜରେ

ଉଜନବଂଶ ଓଡ଼ିଶାରୁ ନିର୍ବାଚନ ଆସେମ୍ବ୍ଲି
ସଭ୍ୟ ମଧ୍ୟେ ସଭ୍ୟ ଭାବେ ଯାହା ଗଲେ କରି
ଠିକେ ନିଜ କହୁ ସେ ଯେ ଠକେଇରେ ପଡ଼ି
ମନ୍ତ୍ରୀ ପଦ ମନ୍ତ୍ର ଫେଣା ନ ପାରିଲେ ଛାଡ଼ି
ଉଜନବଂଶ ବୋଲାଙ୍ଗିରୁ କଂଗ୍ରେସର ନୀତ
ଧରି ନେଇଥିଲେ ମନ ପ୍ରାଣ ବକ୍ଷଯାତ
ଖଦଡ଼ ଧାରଣ ଆଉ ନିଶା ନିବାରଣ
ଅସ୍ପୃଶ୍ୟତା ବିମୋଚନ ଗ୍ରାମ ସଂଗଠନ
ଏତେ ଗୁଣ ଥିଲେ ପୁଣି ବିହାର ଆସେମ୍ବ୍ଲି
ସଭ୍ୟପଦ ଅଳଙ୍କୃତା ଦୀର୍ଘ ଦିନ ଧରି
ଦିନେ ନୁହେଁ ମାସେ ନୁହେଁ ବର୍ଷ ବର୍ଷ ଜାଣ
ବକ୍ତୃତାରେ ଯାର କର୍ମେ ବିଧାନ ଭବନ
ସାହେବ ସକଳ ଯାକୁ ମନେ ଥିଲେ ମାନ
ହେଉ ସେ ବିଶାଳ ବାଗ୍ମୀ ହେଉ ମହାଜ୍ଞାନୀ
ଓଡ଼ିଶା ଆସେମ୍ବ୍ଲି ନାହିଁ ଦେଲା ଉଚ୍ଚ ସ୍ଥାନ
ଭିତର ବିଗୁର ଥିଲା କରିବାକୁ ନ୍ୟୂନ
ଜାଣ ତ କଣାଏ ଅଗ୍ନି ବ୍ରହ୍ମାଣ୍ଡ ଦହଇ
ଦଳେଇ ଘାଇ ଯେ-ଧାରେ ପାଣିରେ ଲୁଗଇ
ପ୍ରୟୋଗ କରି ସେ ନିଜ ବିଚକ୍ଷଣ ବୁଦ୍ଧି
କେତେକ କାର୍ଯ୍ୟରେ ଯାହା ଲଭିଥିଲେ ସିଦ୍ଧି

\+ \+ \+

ଚଣ୍ଡି ଚରଣଙ୍କର ବିୟୋଗର ବର୍ଷକ ପୂର୍ବରୁ ଦଳେଇ ଘାଇ ଲାଗିଥିଲା ।

ସେକାଳରେ ମହାଜନେ ଚଢ଼ା ସୁଧ ନେଇ
ଖାତକର ଘରଦ୍ୱାର ଦିଅନ୍ତି ବୁଡ଼ାଇ
ମହାଜନୀ ଆଇନକୁ କଲେ ପ୍ରଚଳନ
ଖାତକ ସକଳ ହେଲେ ଭଲେ ଥଇଥାନ
ନବାବ ସାହେବ ଲାଟ ଆଗୁଁ ହୋଇଥିଲେ
ମେମ୍ବର ଭଳିଆ ଜଣେ ମେମ୍ବର ଏ ଭଲେ
କଂଗ୍ରେସର ମର୍ଯ୍ୟାଦା ଛାଡ଼ିବାର ଦେଖି
ଗୋଦାବରୀଶଙ୍କୁ ସେ ଯେ କହିଥିଲେ ଡାକି
ମନ୍ତ୍ରୀସଭା ଗଢ଼ିବାକୁ ନିଅ ହେ ଦାୟିତ୍ୱ
ନେଇଥିଲେ ମନ୍ତ୍ରୀପଦ ଥିଲା ଆନ ତତ୍ତ୍ୱ
ଯୁଦ୍ଧ ଘନଘଟା ବ୍ୟାପିଥିଲା ଦେଶେ ଦେଶେ
ନେତାଜୀ ଅନ୍ତର ଦେଲେ ସନ୍ନ୍ୟାସୀର ବେଶେ

ଯିବାର ପଛକୁ ଥିଲା ବିସ୍ତୃତ ଉଦ୍ୟମ
ଓଡ଼ିଶା ବିହାର ବଙ୍ଗ ପ୍ରଦେଶ ଆସାମ
ଏଣୁ ପ୍ରାନ୍ତେ ମନ୍ତ୍ରୀଦଳ ଥିବ ଆମ ହାତେ
ଧସାଇ ଆସିବ ମୁଁ ଯେ ଫଉଜ ସଙ୍ଗତେ
ଆମର ଶାସନ ଆମେ ନିଜେ ନେବା ଯୁଝି
ଦେଶ ଛାଡ଼ି ଯିବେ ଗୋରା ମହତକୁ ବୁଝି
ଦିଲ୍ଲୀ ଯାତ୍ରାପଥେ ଖାଲି ଉଠି କଳରବ
ଜୟହିନ୍ଦ ନିନାଦରେ ଉଚ୍ଛୁଳିବ ନଭ
ମର୍ଯ୍ୟାଦା ମୁଣ୍ଡେଇ ନେଲେ ଚାଲିଲା ଶାସନ
ଭିତର ବିପ୍ଳବେ ଭାଗ ଥାଇ ସାବଧାନ
ଯୋଗସୂତ୍ର ରଖିବାକୁ ନେତାଜୀଙ୍କ ତୁଲେ
ଯୋଗାଡ଼ ଚାଲିଲା ଗୁପ୍ତେ ଆମ ଏ ଉତ୍କଳେ

ନେତାଜୀଙ୍କ ଆଦେଶରେ ବଙ୍ଗୀୟ ବିପ୍ଳବୀ
ଖେଦିଲେ ଓଡ଼ିଶା ପ୍ରାନ୍ତେ ଥରେ ନିଅ ଛବି

କ୍ଲପ୍ ଗାଣ୍ଡି ଚଣ୍ଡି ସେ ଯେ ଶିକାଗୋ ବେଶରେ
ବୁଲୁଥିଲେ ଧୂମ୍ରପୁର ଘନ ଘୋର ମାଳେ
ବେତାରର ସ୍ଥିତି ପାଇଁ ବସ୍ତୁ ହେଲା ସ୍ଥାନ
ପାଲ୍ମର ହକେଞ୍ଚ ଭାଇ ପକାଅ ହେ ମନ
ପାର୍ବତ୍ଟ ସେନା କଳ୍ପ ଥିଲେ ଯେ ଓଡ଼୍ରାଇ
କେଳେଖଣ୍ଡ ବୋଟ ଆସି ଲାଗିଥିଲା ତହିଁ
ଏସବୁ ଭିତରେ ଥିଲା ପଣ୍ଡିତଙ୍କ ହାତ
ସନ୍ଦେହେ ହବାକ୍ ହେଲେ ଆତଙ୍କିତ ଚିତ୍ତ
ପଗୁରନ୍ତେ ପଣ୍ଡିତଜୀ ଦେଉଥିଲେ ହସି
ହବାକ୍ ସାହେବ ମନେ ମନେ ହେଲେ ଖୁସି
ସେ ହସରେ ରହିଥିଲା କି ଅବା କୌଶଳ
ଗୋବ୍ ଗଭର୍ଣ୍ଣର ନ ପାଇଲା ଥଳକୂଳ
ଖାଲି ଦୁଇ ଜଣ ଥିଲେ ଆମ ମୂଲକରେ
ପଣ୍ଡିତଙ୍କ ତୁଲେ ଦେଖା ମଥା ଆନ୍ଦୋଳନରେ
ଅନ୍ଧକାରେ ଯାଇ ସେ ଯେ ଆମନ୍ତ୍ର ଅନ୍ଧାରେ
ବିପ୍ଲବର ପରାମର୍ଶ ଆଣି ଗୋପନରେ
ଆନ କେହି ନୁହେଁ ଜଣେ ଗଙ୍ଗାରାମ ଭୂଷଣ
ଦିବାକର ବାବୁ ପରା ନେତା ପୁରାତନ
ରାଣୀ ମୁଣ୍ଡ ଟଙ୍କା ଯେହେତୁ ହୁଅଇ ଅଚଳ
ଏ କାଳକୁ ସିନା ତାଙ୍କ ଫାଟିଲା କପାଳ
ଆଉ ଜଣେ ଦେଖ ପରିଚିତ ଯୋଗ୍ୟ ଲୋକ
ଶ୍ରୀହର୍ଷ ମିଶ୍ର ଯେ ବଙ୍ଗ ବାର୍ତ୍ତା ସମ୍ପାଦକ
ଦେନଏ ବାହାରେ ଆଇ ବୁଝୁଥିଲେ ସବୁ
ସତ ମିଛ ପର୍ଯ୍ୟବେକ୍ଷଣ ବୁଝିନିଅ ବାବୁ
ନେତାଜୀଙ୍କ ସହିତରେ ହେବା ପାଇଁ ମେଳ
ଚଟ ଗନ୍ତ ଯାଏ ଯାଉଥିଲେ ଦିବାକର

ଓର ଦଣ୍ଡି ବ୍ରହ୍ମଦେଶେ ଥାଆନ୍ତେ ପଳାଇ
ବାଧ୍ୟ ବାର୍ଦ୍ଧକ୍ୟେ ସବୁ ଓଲଟିଲା ଭାଇ
କଲିକତା ନଗରୀର ଗୋଟିଏ ହୋଟେଲେ
ଶ୍ରୀହର୍ଷ ଓ ଦିବାକର ତାଙ୍କୁ ଭେଟ ହେଲେ
ଯୋଗାଡ଼ କରୁଛନ୍ତି ତାଙ୍କୁ କରିବେ ମୋଚନ
ଏ ସମୟେ ପହଞ୍ଚିଲା ପୋଲିସ୍ ସମନ
ୱାରେଣ୍ଟ ପରୱାନା ହାତକଡ଼ି ସାଥ
ଜେଲ ଯିବା କଥା ହେଲା କି ଖାଇବେ ଭାତ
ଦେଖୁ ଦେଖୁ ଯୁଦ୍ଧ ଗଣ୍ଡ ଆସିଲା ବଦଳି
ଗୋପନ ବିପ୍ଳବ ଆଉ ନ ପାରିଲା ଚାଲି
ପଣ୍ଡିତଙ୍କ ବାମ ହାତ ଶ୍ରୀକର ଡାହାଣ
ସମ ଥିଲେ ପାଖେ ପାଖେ ଯେଉଁ ଦେନି ଜଣ
ବଙ୍ଗଦେଶୁ ମୁକ୍ତ ହେଲେ ସମୟର କ୍ରମେ
ରାଜମାଢ ଦୋଳାୟିତ ଏ ଉତ୍କଳ ଧାମେ
ମନ୍ତ୍ରୀତ୍ୱ ନିଷ୍ଫଳ ହେଲା ନିଜ ଲକ୍ଷ୍ୟ ସ୍ଥିର
ତଥାପି ସେ କ୍ଷମତାର ଉଚିତ ବେଭାର
ନକରି ଛାଡ଼ିଲେ ନାହିଁ ପଣ୍ଡିତ ପ୍ରବର
ସ୍ଥାପିଲେ ବିବିଧ ସଂସ୍ଥା ଜନ ହିତକର
ବିପ୍ଳବରେ ଯଶ କୀର୍ତ୍ତି ନହେଲା ପଛକେ
କରିଲେ କଅଣ ଭାଇ ଶୁଣିଯାଅ ଠିକେ

ମରମେ ମରମେ ଅନୁଭବ ଥିଲେ
ଶିକ୍ଷାର ଅଭାବ ଏ ଦେଶେ
କୃଷି ବୈଜ୍ଞାନିକ ଡାକ୍ତର ଶିକ୍ଷକ
ଆମୁଥିଲେ କାହିଁ କେତେ ସେ
ଅମଲା, ହାକିମ ହୁକୁମା ଯେତେକ
ପଡ଼ୋଶୀ ରାଇଜ ଶିକ୍ଷିତ ସନ୍ତାନେ
ଆବୋର ଥିଲେ ଏ ମୁଲକ ।

ଏ ଦେଶର କୋଟି ଜନତା ନଯ଼ନ
ଖୋଲିବାକୁ ଲୋଡ଼ା ପାଠ ହେ
ବିଶ୍ୱବିଦ୍ୟାଳଯ଼ ଯୋଜନା ଗଢ଼ିଲେ
ନାଗ୍ରିଜ ଫିରଙ୍ଗି ଜାଠ ହେ
ତଥାପି, କଲ କଉଶଳେ ମନ୍ତ୍ରୀରୁ
କରି ଗଢ଼ିଦେଲେ ବିଶ୍ୱବିଦ୍ୟାଳଯ଼
ଆଜି ସେଇ ସବୁ ଖଣ୍ଡରୁ ।
ଉତ୍କଳ ମଣ୍ଡଳେ ଦିଗ ଦିଗ ବ୍ୟାପୀ
ଶିକ୍ଷା ଅନୁଷ୍ଠାନ ଜାଗଇ
ଇଞ୍ଜିନିଯ଼ରିଂ କଲେଜ କାହିଁ ବା
କୃଷି ଗବେଷଣା ଲାଗଇ
ଯେତେବା,. ବିଶ୍ୱବିଦ୍ୟାଳଯ଼ ଥିବାରୁ
ଆଗାମୀ ଦିନର ପାଇଁ ସବୁ ପନ୍ଥା
ଖୋଲିଥିଲେ ମନ୍ତ୍ରୀ ହେବାରୁ ।
ପୁରୀ ବାଲେଶ୍ୱର ସମ୍ବଲପୁରରେ
ତିନୋଟି କଲେଜ ବସିଲା
କଟକ ନଗରେ ମେଡ଼ିକାଲ ମହା-
ବିଦ୍ୟା ନିକେତନ ହସିଲା ।
ରଖି ସେ, ହାଇକୋର୍ଟ ପାଇଁ ବଗ୍ୱର
ଦାବୀ ବାଡ଼ିଥିଲେ, ଯୁଦ୍ଧ ପରେ ହେବ
କହିଥିଲେ ଗୋରା ସର୍କାର ।
ତେଯ଼ାଳିଶ ବନ୍ୟା- ବେଳେ ବାଲେଶ୍ୱର
ଜିଲ୍ଲା ପାଇଁ ହେଲେ ସହାଯ଼
ଅବାଧ ବାଣିଜ୍ୟ ଦିଲ୍ଲୀର ଆଦେଶେ
ଦୁର୍ଭିକ୍ଷରେ ଜନେ ଅଥଯ଼
ସେବେଳେ, ଧାନ ମହଜୁଦ ରଖାଇ
କଲି କଉଶଳେ ଦୁର୍ଭିକ୍ଷ ଦାଉରୁ
ଦେଇଥିଲେ ଭଲ ବଞ୍ଚାଇ ।

ପାରିକୁଦ ବୃତ୍ତି- ବନ୍ଧ ନିର୍ମାଣିଲେ
ସହଜେ ଶାଳିଆ ଯୋଜନା
ଯେତେ ସୁମହତ କର୍ମ ଆଚରିଲେ
କହିବ କି ଅବା ଅଜଣା
ଏଭଳି, ମନ୍ତ୍ରୀ ହେବା ଯୋଗ ସୁଯୋଗେ
ବିଦେଶୀ ଶାସନ ଜମୂନ୍ତେଣ ଆଇ
ପାରିଲେ ଯେତେ ସେ ସଜାଗେ ।

ରାଜନୀତ କାରବାର ଗହନ ସେ ତଥ୍ୟ
ଦୁଇବର୍ଷ ଆଠ ମାସେ ଭୋଗିଲ ମନ୍ତ୍ରୀତ୍ୱ

ଟିକିନଖି ଭାବେ କେତେ କରିବି ବର୍ଣ୍ଣନ
ବଖାଣି ବସିଲେ ହେବ ବିରାଟ ପୁରାଣ

ବାଡ଼ି ଚଗିଲୁ ସମ୍ପତ୍ତି ରହିଥିଲା ଯାହା
ନିଜକୃତ ବିଦ୍ୟାଳୟେ ଦାନ କଲେ ତାହା

ପ୍ରାଚୀ ବୀମା କମ୍ପାନୀ ସେ କରିଲେ ସ୍ଥାପନ
ଜନହିତେ କଟକରେ କଟେ କିଛୁ ଧନ

ଉଣେଇଶ ବାଉନ ନିର୍ବାଚନ ବେଳେ
ପୁନରପି ଆସେମ୍ବ୍ଲି ସଭ୍ୟ ପଦ ନେଲେ

ସର୍କାରଙ୍କୁ ସଜ ଢ଼ଣ ଚଳାଇବା ଲାଗି
ବିରୁଦ୍ଧ ଦଳରେ ସ୍ଥାନ ନେଇଥିଲେ ଜଗି

ଉତ୍କଳ ସମ୍ମିଳନୀ ଯେ ଫେଡ଼ଇବେଳାରେ
ବସିଥିଲା ସେ ସମୟେ ମୁଖ୍ୟ ଭାଗ ନେଲେ

ବିଦ୍ରୋହୀ ଗୁଣ୍ଡାଙ୍କଠାରୁ ଲାଠି ମାଡ଼ ଖାଇ
ମୁଣ୍ଡ ଫାଟି ରକ୍ତ ସ୍ରୋତ ଯାଇଥିଲା ବହି

ଦିଲ୍ଲୀରୁ ମନ୍ତ୍ରୀ ର କଲେ ଶାଳିଆ ଭବଷ
ବାଣପୁର ହତେ ଯେହ୍ନୁ ଡାକଇ ପୀୟୂଷ
ଉତ୍କଳ ସମ୍ମିଳନୀ ହେଲା ବ୍ରହ୍ମପୁରେ
ସଭାପତି ଆସନ ସେ ମଣ୍ଡିଲେ ସେଠାରେ
ଜନ ମନ ଉନ୍ମାଦକ ଉତ୍ସାହିତ ବାଣୀ
ସଭାସ୍ଥଳ ଉନ୍ମାଦନା କେ ପାରେ ବଖାଣି
ଯାର ମର୍ମ ଗ୍ରନ୍ଥ ସୁରେ ଲେଖିଛି ଛ ପଦ
ସେ ସମସ୍ତ ପରିସ୍ଥିତି ବୁଝିବେ କୋବିଦ
କେନ୍ଦ୍ର ପାଶେ ସୀମା ଦାବୀ କରିବାକୁ ଜଣା
ବକ୍ତୃତାର ସାର କଥା ଶୁଣ ସେ ଘୋଷଣା ।

ମୋ ଭାଇ ତୁ ପରା      ବୀର ଓଡ଼ିଆରେ
ପର ଓଳି ତଳେ ଘର
ଭାଳିଲେ ଏ କଥା      ଅନ୍ଧାର ଦିଶଇ
ଛାତି ହୁଏ ଗରଗର ରେ
ମୋ ଭାଇ, କେତେ ଦୁଃଖେ ବଞ୍ଚ କେ କାହିଁ
ଅସର ଯାତନା      ପଡ଼ୋଶୀ ତୋ ପାଇଁ
ଶାସନ ପଦ୍ଧତି ଗଢ଼ଇ ।

କାହିଁ ଜଳନ୍ଧର      ତରଳା ଟିକାଲି
ମଞ୍ଜୁଷା ବୁଢ଼ାର ସିଂହ
ମାନଭଞ୍ଜ ହାତେ      ହୋଇଛ ରେ ବନ୍ଦୀ
ଶତ ଶତ ଶିଶୁ ସିଂହ ରେ
ଓଡ଼ିଆ, ରୁଦ୍ର ପରା ବୀର ଓଡ଼ିଆ
ସକଳ ଗରବ      ଚୂନା ହୁଏ ଯଥା
କେଳା ହାତେ ନାଗଛୁଆ ରେ ।

ମଧ୍ୟ ପ୍ରାନ୍ତେ କାହିଁ ଫୁଲ୍‌ଝର ଚନ୍ଦ୍ରା
ବସ୍ତର ଶାରଙ୍ଗ ଗଡ଼
ଯଶପୁରର ତୁମେ ଅଯଶ ଲଭୁଛ
ବୀରଭୂମି ରଘୁଗଡ଼ ରେ
ମୋ ଭାଇ, ସେ କି ନୁହେଁ ଆମ ଓଡ଼ିଶା
ତଥାପି ଆମର ମୁହଁ ଫିଟୁ ନାହିଁ
ମୂରବ ଆମର ଓଡ଼ିଶା ।

କାହିଁ ଧଳଭୂମି ଗଞ୍ଜରବ ଥାନା
ସିଂହଭୂମି ସାରା ଜିଲା
ବରାହଭୂମିରେ ରହିଥିଲ ଯହିଁ
ବଇଶି ଅଭେଦ୍ୟ କାଲ ରେ
ଓଡ଼ିଆ, ସେ ଅଙ୍କ ନୁହଇ ତୁମର
ବହୁବାସି ପ୍ରଭବେ ଉତ୍କଳ ଜନନୀ
ଶ୍ରୀଅଙ୍ଗୁ ହୋଇଛୁ ଅନ୍ତର ।

ଉତ୍କଳ ଜଟମା ଅଙ୍ଗଚ୍ଛେଦେ ଭାଇ
ବଙ୍ଗବାସୀ କେତେ ହୋଇଲ
ମେଦିନୀପୁରରେ ଘର ସୁଳ ବାନ୍ଧ
ବଙ୍ଗାଳୀ ହୁକୁମ ପାଳିଲ
ନୁହେଁ କି, ଏ କଥା ପାଇକ ପୁଅର
ଚଉପାଶୁ ଘେର ପଡ଼ୋଶୀ ଆମକୁ
କରିଲେଣି ଅର୍ଦ୍ଧ କବଳ ।

ଯାଇଥିଲ ଟାଟା ଯାଇଛୁ ଉତ୍ତମା
ଶେଷକୁ ଏ ଫଳ ଥିଲା ରେ
ଫଟା କପାଳକୁ ଖରସୁଆଁ ଅଛୁ
ଷଢ଼େଇକଲା ତ ଗଲାରେ
ଭଲରେ, ମାଡ଼ଛେ ଭେଳିକ ପାଲ ରେ
ମୁହଁ ଦେଖି ଏକ- ପାଖି ବୁଝାମଣା
ଦିଲ୍ଲୀ ମଣ୍ଡଳରେ ହେଲା ରେ ।

ଆଜ ବି ପଡ଼ୋଶୀ ଯାଉଛି ପିଠିରେ
ଶାଣିତ କୁଠାର ଘୂରାଇ
ପାଷାଣ ହେଲ କି ଗଜପତି ବଂଶ
ହୃଦୟ କି ନାହିଁ ଜଳଇ
ମୋ ଭାଇ, ରହିଥିବା କବେ ଅନାଇଁ
ଘୁଞ୍ଚିଥିବା ଜଳ- ଜଳ ଝଳକଳ
ସବୁ କି ଗଲାରେ ଭାସିଇ ।

ଗାଆଁ ଗହଳରେ ଭାଇ ଭାଇ ଯେଉଁ
ବଦାଢ଼େ ନ ଅଣ୍ଟେ ସମସ୍ତ
ଅସଲ କଥାକୁ ପଛକୁ ଠେଲୁଛେ
ବୁଝିବାକୁ ନାହିଁ ହୃଦୟ
ମୋ ଭାଇ, ଜୀବନ ମରଣ ସମସ୍ୟା
ସରୁଇଲେ ଏଥି ମାନଚିତ୍ର ଦେଖୁଁ
ଲଭିଯିବ ଧନେ ଓଡ଼ିଶା ।

+ + +

ସବୁଠେ ସୀମା ତଦନ୍ତ କମିଟି ରିପୋର୍ଟ
ପ୍ରକାଶ ପାଇଲା ଜନେ ଜାଣିଲେ ସ୍ପଷ୍ଟ
ଶ୍ରୀଗୋଦାବରୀଶଙ୍କର ଦୃପ୍ତ ଆବାହନ
ଧ୍ୱନିତ ହୋଇଲା ସାରା ରାଜ୍ୟେ ଘନଘନ
ରାଜ୍ୟସରକାର ସ୍ପଷ୍ଟ ହେଟା ନୁହେ କିଛି
ନେକିମତ ନ୍ୟାୟବାଦ ନ ପାରିଲେ ସହି
ଶପଥ କରିଲେ ମନ୍ତ୍ରୀ ନବ ଚନ୍ଦ୍ରଧର୍ମ୍ମ
ଆଣିବ ଫେରେଇକଳା ଯାଉଛି ମୁଁ ଦିଲ୍ଲୀ
ନ ହେଲେ ଫେରିବ ଦେଇ ମନ୍ତ୍ରୀତ୍ୱ ଇସ୍ତଫା
ଶୁଣ ମୋର ଦେଶବାସୀ କହିଦେଲେ ସଫା
କିନ୍ତୁ ସବୁ ଥିଲା ତେଣେ ହେଲା ମେଏଁ ମେଏଁ
ଓଡ଼ିଶାକୁ ଫେରିବା ଆଉ କେଉଁ ମୁହେଁ
ମାଗିଲେ ଅଭୟ ବର ଦିଅ ମିଳିଟାରୀ
ଏକା ଏକା ଓଡ଼ିଶାକୁ ନ ପାରିବି ଫେରି
ଉତ୍କଳୀୟ ଜନମତ ଜାଗ୍ରତ ପ୍ରବଳ
ରାଜ୍ୟବ୍ୟାପୀ ଉତ୍ତେଜନା ମହା ଭୟଙ୍କର
ଓଡ଼ିଶା ପୋଲିସ ଦ୍ୱାରା ଓଡ଼ିଆ ଦମନ
ସମ୍ଭବ ହେବ ନ ମୋତେ ସୀମା ଆନ୍ଦୋଳନ
ହୁକୁମ ଆଣିଲେ କର ସକଳ ଦମନ
କରିବ କେବଳ ଦିଲ୍ଲୀ ଶେଷ ସମାଧାନ ।
ଅଗଣନ ସେନାଦଳ ଗୁଳି ଗୁଳା ହାତେ
ଭର୍ତ୍ତି ହେଲେ ଓଡ଼ିଶାର ଚାରିପଟ୍ଟା ପଥେ
ଜଳା ଚଳେ ଲକ୍ଷଜନ ବାନ୍ଧି ଦେଲେ ଧାଡ଼ି
ବନ୍ଦ କଲେ ଷ୍ଟେସନରୁ କାହିଁ ରେଲଗାଡ଼ି
ଚତୁର୍ଦ୍ଦିଗେ ସୈନ୍ୟଦଳ ବନ୍ଦ କରି ବାଟ
ନ ଡରିଲେ ପୁରବାସୀ ଗୁଳିର ପାହାଡ଼

ମୁହୂର୍ତ୍ତିକେ ମୁଣ୍ଡମାଳ ସମୁଦ୍ର ଲହଡ଼ି
ଘଣ୍ଟଏ ଜନତା ସ୍ରୋତ ଆସୁଛନ୍ତି ମାଡ଼ି
ଚଳିଲା ଚଳିଲା ଆଖିବୁଜା ଲାଠିମାଡ଼
ଫାଟିଲା କାହାର ମୁଣ୍ଡ ଭାଙ୍ଗିଲା କା ହାଡ଼
ଜନତାରେ ଯେତେ ଭଲ ନେଉଥାନ୍ତି ତଡ଼ି
ସମୁଦ୍ର ଲହଡ଼ି ପରି ଆସୁଥାଏ ମାଡ଼ି
ମେଜର ସାହେବ ଘରେ ଗୁଳି ଦେଲେ ଛାଡ଼ି
ବେଙ୍ଗପାଣିଆର ଗନ୍ଧ ଖପୁରୁଟା ଉଡ଼ି ।
ପଡ଼ିଲେ ଭୂତଳେ ଜନେ ହୋଇଲେ ଅଥୟ
ଗୁଳିଗୁଳା ବନ୍ଧ କଲୁ ନ କରିଲେ ଭୟ
ନଜାଣି ପାଣିରେ ଯଥା ଉଠଇ ନେଉଣ୍ଡି
ପଞ୍ଚକୋଶ ଧରି ଜନେ ଆସନ୍ତି ଧଉଣ୍ଡି
କାହିଁ ମିଲିଟାରୀ ଜଏ ସର୍କାର କେଉଁଠି
ଯାହା କହୁ ବୁଝାମଣା ହୋଇଥିବ ଏଠି
ଚତୁର୍ଦ୍ଦିଗୁ ଲକ୍ଷଜନ ପଶିଲେ ଧସାଇ
ମିଲିଟାରୀ ମହାବଳ କାରୁ ଛନ୍ଦ ପାଇ
ସର୍କାର ଅଫିସ କାହିଁ ନ ଖୋଲିଲା ଗୋଟେ
କର୍ମଚାରୀ ଜଏ କାହିଁ ରହିଲେ ସଙ୍କଟେ
ଚତୁର୍ଦ୍ଦିଗ ହାହାକାର, ଉତ୍କ୍ଷିପ୍ତ ଜନତା
ଇତିହାସେ ଥିବ କି ନା, ମୋ ଦେଖିବା କଥା
କଟକ ସହର ସମାଚାର ତାହୁଁ ବେଶୀ
କେନ୍ଦ୍ରଓ ଷ୍ଟେସନେ ଲୋକ ହୋଇଗଲେ ମେଳି

ଅଳକୂଳ ରହିଲେ ମାଳ ମାଳ ମୁଣ୍ଡ
ଅବାଳ ବୃଦ୍ଧ ବନିତା ହୋଇଗଲେ ଜୁଣ୍ଡ
କି ଅବା ପ୍ରଳୟଙ୍କର ବିଷମ ଗତିରେ
ଅଗ୍ନି ବର୍ଷେ ରଣ ଅବା ହିମାଦ୍ରି ଚୂଡ଼ରେ

ଓଡ଼ିଶା ମୂଳକେ ଟେକ ସହରେ କଟକ
ମାନଲାନ ଜନବଳ ପୋଲିସ ଅଟକ
ଲୁଟାଅ ଲୁଟାଅ ଗୁଳି ଚଳାଅ ଆଦେଶ
ନିଷ୍ଠୁର ନୀରବଦ୍ରଷ୍ଟା ଓଡ଼ିଆ ପୋଲିସ
ଜାତି ପାଇଁ ଭୁଲେ କ୍ଷଣେ ସ୍ୱକୀୟ ମମତା
ବନ୍ଧୁକ ଥମିଲା ଯାତେ ଧନ୍ୟ ପିତା ମାତା
କେନ୍ଦ୍ର ମିଲିଟାରୀ ଦଳ ଲୁଟାଇଲେ ଗୁଳି
ଦୁଇଜଣ ଶହୀଦ ହେଲେ ପଡ଼ିଗଲେ ଢଳି

ସାରା ଓଡ଼ିଶାରେ ପଡ଼ିଗଲା ହେ ଚହଳ
ଯହିଁ ତହିଁ ଜନଗଣ ହେଲେ ବିଶୃଙ୍ଖଳ
ଓଲଟିଲା ଗାଡ଼ି କାହିଁ, ଭାଙ୍ଗିଗଲା ଶଙ୍ଖ
ରାଜ୍ୟ ସରକାର ସବୁ ମଣିଲେ ଆତଙ୍କ
ଆତଙ୍କର ପ୍ରତିଶୋଧ ସୃଜିଲେ ଆତଙ୍କ
କୋଳୁଆ ଭୟରେ ଘରୁ ନବାହାରେ ଲୋକ
ସହରେ ବଜାରେ ହେ ଚୌରାଙ୍ଗୀ ନାଚ
ପାଞ୍ଚଜଣ ଏକାବେଳେ ନ ପାରିବେ ବୁଲି
ସନ୍ଧ୍ୟାବେଳେ ଖଞ୍ଜା ତଳେ ପୋତି ଦେଇ ମୁଣ୍ଡ
ଚୁପେ ଚୁପେ କୁହାକୋହି ଶୁଭେନା ବା ତୁଣ୍ଡ
ଏ ଭୀଷଣ ସମୟରେ ଶ୍ରୀଗୋଦାବରୀଶ
ପୁରେ ପୁରେ ନଗ୍ରେ ନଗ୍ରେ ଦେଲେ ବଜ୍ରଘୋଷ
ଆସୁ ଗୁଳି ବନ୍ଧୁକ ବା ଆସୁ ଅବା ଲାଠି
ଗୁଳି ଆଗେ ଛାତି ପାତି ଲାଠି ପାଇଁ ପିଠି
ଶହେ ଚୌରାଙ୍ଗୀ ଭାଙ୍ଗି ଆସ ହେ ଆଗେଇ
ଲୁହତଳା ମୁହେଁ ମୁହେଁ ହସ ଉକୁଟଇ
ଦୁଲୁ ଦୁଲୁ ଛାତି ତଳେ ଦମକିଲା ନିଆଁ
ଶହେ ଚୌରାଙ୍ଗୀ ଡରେ ନହେଲେ ଛୁଆଁ

ଏଇ ମହା ଅବରୋଧ ବନ୍ଦୀ ମହାଗାର
କେବଳ ଭେଜାଲ ଚର୍ଯ୍ୟା ସ୍ୱାସ୍ଥ୍ୟଭଙ୍ଗ ଫଳ

କାରାଗାରୁ ଅଳ୍ପ ଦିନେ ଲଭିଲେ ମୁକତି
ମୁକ୍ତ ନ ହୋଇଲ ବ୍ୟାଧି ବନ୍ଧନୁ ଗତି

ଯୋଗ୍ୟ ଯିଏ ଦେଶ ଲାଗି ଦେଲେ ଅଞ୍ଜଳି
ସେମାନଙ୍କ ସ୍ମୃତି ଗୀତେ ଶେଷ ଅର୍ଘ୍ୟ ଦେଲି

ଶରଶଯ୍ୟା କଲେ ଯତେ ଭୀଷ୍ମ ମହାରଥୀ
ମହାନ ଓଡ଼ିଆ ଜାତି ମହନୀୟ ସାର୍ଥୀ ।

ଶହୀଦମାନଙ୍କ ଉଦ୍ଦେଶ୍ୟରେ ପଣ୍ଡିତଜୀଙ୍କର ଶେଷ ରଚନା —

ବୁକେ ସହି ଦୁଃଖ ଦୈନ୍ୟ ମାନବ ଜାତିର
ଜନମ୍ମ ଲଭିବା ଜନ କୋଟିକେ ବା ଜଣେ
ନାମ ତାର ଭୂମଣ୍ଡଳେ କର୍ମବୀର
ଜୀବନେ ବାନ୍ଧି ତ ମୂଲ୍ୟ ଲଭଇ ମରଣେ ।
ଜଗତରେ ଦୁର୍ମତିର ସେତୁ ପ୍ରାଦୃଷ୍ଟିର
ବନ୍ଧୁ ହିତ ଲାଗି ପ୍ରାଣ ତେଜଇ ଯେ ହରଷେ
ସ୍ୱତନ୍ତ୍ରା ମଧ୍ୟେ ଚିର ନୂତନ ବିଚଳିତ
ମାଟିକୁ ଯେ କରେ ପୁନା ନିବିଡ଼ ପରଶେ ।

ତାହାର ଚରଣେ ମୋର କୋଟି ନମସ୍କାର
ସେ ଅଟେ ଦେବତା ଭବେ ସାରା ଦୁନିଆର

\+ + +

(ପରିସ୍ଥିତି ଉପରେ କବି ବୈକୁଣ୍ଠନାଥ)

ଚନ୍ଦନଶ୍ରୀ ହୋଇ ଓଡ଼ିଶା ଭୂଇଁ ଲୋ
ପଡ଼ି ଯେବେ ଦୁକୁଦୁକୁ
ବଡ଼ ସ୍ଥାନମାନ ଆମ ଘର ଜଣା
ଦେଖି ତା ଫାଟିଲା ବୁକୁ ।

ସପନ ଧନ ତା' ଓଡ଼ିଆ ମୂଲକ
ଗଙ୍ଗା ତଟୁଁ ଗୋଦାବରୀ
ତା ଜିଅନେ ଅଙ୍କ ଖଣ୍ଡ ପଡ଼ିଲା ଲୋ
ଜୀବନ କି ପାରେ ଧରି ।

ଯନ୍ତ୍ରବନ ଗାଥ ଦେବଲୀଳା ଭୂଇଁ
ପୁଣ୍ୟମ ଟି ସତ୍ୟବାଦୀ
ଚଳିଲା ତମ ଲ କୁସ୍ଥଥିଲା ତଳେ
ବାଛିଲ ଜଳ ସମାଧି ।

ନିଜ କବିତାରେ ପୂନ୍ନ ଘୋଷଣା .—

ବାଲି ଧୂଳି ମାଟି ପଙ୍କେ ସିନା ଗଢ଼ା
ପଡ଼ିଛୁ ବଳି ଏ ଜନମ ଭୂଇଁ
ଦେଖିବ କେମିତ ଲୁହୁନେବେ ପର
ବାହୁରେ ଏ ପିଣ୍ଡେ ପରାଣ ଥାଇ ।

+ + +

ପିଣ୍ଡରେ ପବନ ଆଉ ପାଇଲେନି ଚନ୍ଦ୍ର
ଜୟ ମା ଜନମଭୂମି ଜୟ ଗାନ୍ଧି ରାଜ
ଜନ୍ମିଲା ଛବିଶ ଊନବିଂଶ ସେ ଛପନ
ମର ଦେହ ତେଜି କଲେ ସ୍ୱର୍ଗ ଆରୋହଣ
ଏବେଳେ ଶୁଭିଲା କୋଟି ଜନ କଣ୍ଠରୋଳ
ଅସମ୍ଭବ ଅସମ୍ଭବ ମରଣ ଖବର
ଅମୃତ ପୁରୁଷେ ମୃତ୍ୟୁ ଛୁଇଁପାରେ କାହିଁ
ଚିର ସ୍ରୋତା ଗୋଦାବରୀ ଝର କି ଶୁଖଇ
ସ୍ୱଦେଶେ ସାଧିଲ ଯେତେ କର୍ମରେ ସାଧନା
ମାନସ ପ୍ରସୂତ ଲକ୍ଷ ମନର କଳ୍ପନା
କଳମ ମୁନେ କି ଧନ୍ୟ ନ କଲ ଏ ମର୍ତ୍ତ୍ୟ
ବଖାଣିଲେ କିଏ ସତେ ପାଶବକ କଣ୍ଠ
ଶୁଭଇ ସେ ମହାମନ୍ତ୍ର ଧ୍ୱନି ଅବିରତ
ଗଗନ ପବନ ଭେଦ ହୁଏ ମୁଖରିତ
ଉତ୍କଳ ପୁରୁଷ ଲାଗି ଦିବ୍ୟ ଅବଦାନ
ଉତ୍କଳ ଭାରତୀ ରତ୍ନଭଣ୍ଡାରେ ଜଳନ୍ତ
କଣ କିଏ ମଣିପାରେ ଅସମ୍ଭବ କଥା
ତା'ର ପଦଚିହ୍ନ ମର୍ତ୍ତ୍ୟେ ବସିବେ ସର୍ବଥା

ଏବେଳେ ଶୁଭିଲା କୋଟିଜନ କଣ୍ଠରୋଳ
ଅସମ୍ଭବ ଅସମ୍ଭବ ମରଣ ଖବର
ଶୁଣ ଶୁଣ କାନ ଡେରି 'କଳକା'ର ବାଣୀ
ପାଷାଣ ପିନ୍ଧିତ ଛୁଟ ପାଲଟିବ ପାଣି
ଅନାଥ ଶିଶୁର ବ୍ୟଥା ନମିଷକେ ଦେଖା
ମର୍ମନ୍ତୁଦ ପ୍ରତିଧ୍ୱନି ସ୍ୱର୍ଣ୍ଣମନ୍ତ୍ର ଲେଖା
'କଣଲବ୍ୱେ' ମାଗୁଣିରେ ଅନ୍ତର ବେଦନା
ସାଇତୁ କବିତା ରସେ ଶବନ ସାତନା

ସ୍ପନ୍ଦିତ ସ୍ତରେ ସ୍ତରେ ପ୍ରାଣ ଉଦ୍‌ବେଳନ
ଜଗତର ପାଠକ ପ୍ରାଣେ ତୋଳିବ କମ୍ପନ
'ଆନଲିଙ୍ଗିନୀ' ଅନେଶ୍ୟର ପୂଜ୍ୟ ଗଳ୍ପାଧର
ଉତ୍କଳ ସାହିତ୍ୟେ ମହାବିଶାଳ ରସାଳ
ଯାବନ୍ତ ଜୀବନ କାଳେ ପାରିବେ କି ଭୁଲି
ମୋ ଦେଶ ତରୁଣ ଯେବେ ଥରେ ଯିବେ ପଢ଼ି
ଅଭିରାମ ସିଂହ ଅଭିରାମ ଗାଥା ରସ
ଅର୍ଜୁନ ସିଂହରେ ଥରେ କର ପରବେଶ
ପଦ୍ମାବତୀ ଦୁଃଖିଧନେ ଖଣ୍ଡ ଧୃତ ହାତେ
ତରବାରି ଉତ୍ତୋଳନ କରିବ ସୂଚନେ
କାଳଜୟୀ 'କାଳିଜାଇ' ନ ଜାଣେ ବା କିଏ
କୂଳ କନ୍ୟା ବଧୂ ନେଇଁ ଗୀର ଭଣ୍ଡାଏ
'ରତ୍ନପ୍ରଭା' କଣ୍ଠୀଙ୍କ ପ୍ରାଣ କଣ୍ଠା ବିକା
ସାଧାନ୍ତଃ କଳ୍ପଶଳ ସ୍ୱଦେଶୀ ଲିପିକା
ଓଡ଼ିଆ କନକା ନୃପ କୁମାରୀ ଚରିତ
ସେଇ ନନ୍ଦର ସଙ୍ଗନେ କି ଝରଇ ଅମୃତ
'କୃଷ୍ଣମେ' ସୁଷମ ବୃତ୍ତି ଆପ ନେ ବାଳିକା
ପ୍ରାଂଶୁଣୀ ଅନୁଭୂତ ଅନବଦ୍ୟ ଲେଖା
'ପୁରୁଷୋତ୍ତମଦେବ' ନାଟକ ମୁକୁଟ
କୋହିନୂର ହୀରା ସମ ଏ ନାଟର ଟେକ
'ମୁକୁନ୍ଦଦେବ'ରେ ବ୍ୟଥା ଗାଥା ଅନୁସର
ଅଧରଜ ନେଇ ଯାଉ ମୋର ଚଲ ୟର
'ଗୀତରୂକ୍ଷ' 'ଗୀତାଞ୍ଜଳେ' ସ୍ୱର ମନୋହର
ସିଂହଭୂମି ଅସ୍ମୀଭୂତା ଏକାନ୍ତ ଦୁର୍ଲଭ
'ତାସ୍ କବିତା'ରେ ଭାସ କେଣ ଜାତ ପ୍ରୀତ
ଅନନ୍ତ ଅନ୍ତର ବାଣୀ ଛନ୍ଦବ୍ରତ ସ୍ତୁତି

ଏ ଦେଶ ସୁବର୍ଣ୍ଣ ପଦ୍ମ ସମ ଶିଶୁଗଣେ
'ଶିଶୁଦେବତା'ର ଧ୍ୱନି ଡାକିଲେ ଶ୍ରବଣେ
ଉପନ୍ୟାସ 'ଅଗ୍ନିଗର୍ଭ' ବନ୍ୟାସ ପାଟବ
ଏ ମାଟି ପବନ ପାଣି ସଙ୍ଗେ ଅଭିନବ
'ଅଠର ଶହ ସତର'ର ଉତ୍କଳ ମୂର୍ତ୍ତି
ଆଦର୍ଶ ଆଦର୍ଶେ ମୂର୍ଖ କର ପ୍ରତିଷ୍ଠିତ
ଏ ଜାତିର ସଂଗଠନ ଶକ୍ତି କି ଚପଳ
ବୁଝିବେ ଓଡ଼ିଆ ଜାତି ହୃଦ ଦୁର୍ବଳ
ପଦେ ପଦେ ଛନ୍ଦେ ଛନ୍ଦେ ସଜୀବ ଲେମାଞ୍ଚ
କବାଟ ବରାଟ ଇତିହାସ ନୁହେ ପାଞ୍ଚ
'ଗଳ୍ପମାଳା' ଗଳ୍ପରସ୍ତୁ 'କେଉଁଟି ଗଳପ'
ଜନଚେତନାର ଚନ୍ଦେ କହ କି ଅଳପ
'ଯନ୍ତାନ୍ତର' ପଟାନ୍ତର ସେହି ଏକା ତାର
ବିଧାନସଭାରେ ପ୍ରସ୍ତାବନା ଅସୁମାର
'ପୁଅଣି ଘର'କି ବାନ୍ଧି ବିଳେପ ଲଭିବ
ମଣିଷ ମନରେ ଗାଥା ରୂପ ଅଭିନବ
ଅଭିନବ ଗୀତ, ଗାଥା କଥା ଉପନ୍ୟାସ
ନାଟକର ସ୍ତରେ ସ୍ତରେ ଜାତି ଇତିହାସ
ସୁସଜ୍ଜିତ ମନୋରମ ଭାଷା ଗନ୍ଥାଧରେ
ଜ୍ୟୋତିର୍ମୟ ବହ୍ନିଚକ୍ଷୁ ପ୍ରତିଷ୍ଠା ଉତ୍କଳେ
ଏ ଦେଶ ସଙ୍କ୍ରାନ୍ତିକଣେ ଦେଖାଇବ ପଥ
ପୂର୍ଣ୍ଣ ହୋଇପାରେ ଉଦେ ଜାତି ମନୋରଥ
ତେଣୁ ସେ ଅମର ଆତ୍ମା ଉତ୍କଳ ପୁରୁଷ
ଶାଶ୍ୱତ ସୁନ୍ଦର ପୁଣ୍ୟ ଶ୍ରୀଗୋଦାବରୀଶ
ମର ଦେହେ କୃତିତ୍ୱ ହିଁ ଅମୃତର ଉତ୍ସ
ଏ ମଣିଷ ବୁଝିଲନି ଅଶ୍ରୁର ଉଚ୍ଛ୍ୱାସ ।

ଛୁଟିଗଲା ଗାଁଏ ଗାଁଏ ପଲ୍ଲୀ ନଗରପଥେ
ପ୍ରମୂର୍ତ୍ତୀଭୂତ ହେଲା ଧର୍ମ କି ବସ୍ତୁ ସ୍ୱ ଚକ୍ଷେ ।

ଜଳକା, କିଶଲୟ, ଆଲେଖିକା, ଚନ୍ଦନିକା, କୁସୁମ, ପୁରୁଷୋତ୍ତମଦେବ, ମୁକୁନ୍ଦଦେବ, ଗୀତଗୁଚ୍ଛ, ଗୀତାୟନ, କାରାକବିତା, ଶିଶୁକବିତା, ଅଭାଗିନୀ, ଅଠରଶହ ସତର, ଗଳ୍ପମାଳା, ନଅଟି ଗଳ୍ପ, ଘଟାନ୍ତର, ପୁଆଣି ଘର ପ୍ରଭୃତି ପଣ୍ଡିତଜୀଙ୍କର ରଚନାସମୂହ ।

ଜନ୍ମଇ ଛବଶ ଉତ୍କଳବଂଶ ଯେ ତପନ
ମର ଦେହ ତେଜି କଲେ ସ୍ୱର୍ଗ ଆରୋହଣ ।

ଦେଶର ପରିସ୍ଥିତି ଉପରେ ଫକୁରାନନ୍ଦ ଯାହା ଲେଖିଛନ୍ତି—

ବେଠିଆ ବାପୁଡ଼ା          ଗୁଳିଗଲା କେଣେ
କାମ ଯେ ବହୁତ ବାକି
କେଣେ ଗଲା ବୋଲି          ହାଲହୋଲା ପଡ଼େ
ସର୍ବେ ହେଲେ କଣମାଖି ।
ଗୁଣପାଶ ବାଡ଼          ହୋଇଅଛୁ ମେଲା
ବାହାରୁ ଆସନ୍ତି ମାଢ଼ି
ଓଳିଆ ପଶୁଏ          ନର୍ଭୟେ ପଶିଣ
ହାଅନ୍ତି କ୍ଷେତ ଉଜାଡ଼ି ।
ପୂରୁବ ହୁଡରୁ          ଭାଟି ପଡୋଶୀଏ
ଗଲେ ଫୁଲେ ଫୁଲେ ମାଡ଼ି
ପୁଣି ସେ ହୁଡ଼କୁ          ବାନ୍ଧିବାକୁ ହେବ
ଦେଇ ସେମାନଙ୍କୁ କାଢ଼ି

ବଳଦ ମଇଁଷ — ସବୁ ଅମଣିଆ
କେହି ନ ଜାଣନ୍ତି ଯତ୍ନ
କଥାଘରେ ପୁଣି — ଖ ଲି ବାଲୁବାଲୁ
ଧୁଆଁ ବାଳୁଙ୍ଗା ଓ ଘାସ

ପେଟକୁ ଶୁଖାଇ — ପିଠି ନଟଘାଡ଼ାଇ
କରୁଥିଲୁ ସେହୁ କାମ
ନ ଖାଇଲୁ କିଏ — ଦେଲା କି ନ ଦେଲା
ଜାଣିଲେ କି ନାହିଁ ନାମ

ତାହାପରି କିଏ — ମଣେଇବ ଗୋରୁ
କିଏ ସଜାଡ଼ିବ କ୍ଷେତ
ଜମିକୁ ଉଦ୍ଧାର — ବାଡ଼ ବୁଜିବାକୁ
ସମରଥ ଥିଲା ସେ ତ ।

ଚାଲିଗଲା ପରେ — ଜଣାଗଲା ସିନା
ତାହାର ପାଇଲୁ ପଣ
କାହିଁ ପଳେଇଲୁ — ବୋଲି କହୁଥାନ୍ତି
ହେଉଛନ୍ତି ଜଣ ଜଣ
ଏତେ ବାଙ୍କା କାମ — କିଏ ସେ କରିବ
କିଏ ଏତେ ସାମରଥା
କଅଣ କରିବା — ଭଲି ସଭିଙ୍କର
ହେଉଅଛୁ ମୁଣ୍ଡବ୍ୟଥା
ଥିଲା ଟୋକି କେହି — ଗୁଣପେଲ ନାହିଁ
ଗଲରୁ କହିଲେ ଭଲ
ଆମମାନେ ସେ କି — ଚେଇଁଲୁ ଏ ଥାନ
ଦେଶ ନଦେବାରୁ ମୂଲ

ଫଳଶ୍ରୁତି—

ଏ ଚରିତାମୃତ ଯେହୁ ପିଅଇ ସାଦରେ
ଧନ ଦଉଲତ କିଛୁ ନ ରହେ ତା' ଘରେ

ନିଜ ପାଇଁ କାଣିଚିଏ ନପାରେ ସେ କରି
ନିନ୍ଦା ଅପବାଦ ସହି ଶେଷେ ପାରେ ମରି

ସ୍ୱର୍ଗ ଲୋକେ ଥାଇ ଶାନ୍ତି ଶୁଣିବ ଖବର
ମୃତ୍ୟୁ ଅନ୍ତେ ଦେଶବ୍ୟାପୀ ପଡ଼େ ହାହାକାର

ଇସ୍ପାତ ପାଲଟେ ଗ୍ରନ୍ଥ ପଢ଼ିଲେ ବିପଦ
ପର ଦୁଃଖ ଦେଖି ତାକୁ ନ ମାଡ଼ିବ ନିଦ

ଦୁର୍ନୀତି ବିରୋଧେ ବଢ଼ିବ ତା ଆତ୍ମବଳ
ପ୍ରଖର ତପନ ସମ ହେବ ଝଳ ଝଳ

ଉତ୍କଳେ ଉତ୍କଳମଣି ଭରତେ ଭରତ
ସମ ଭବେ ସ୍ଥାପିବ ସେ ଧର୍ମ ନ୍ୟାୟ ସତ୍ୟ

ଉତ୍କଳ ଗୌରବ ଗୋଦାବରୀଶ କୀରତି
ରଚନା ଓ ସମ୍ପାଦନା ଗୋପୀ ସେନାପତି ।

—୦—

# ଶ୍ରୀଗୋଦାବରୀଶ ଚରିତାମୃତ

## ଉପସଂହାର

(ବାଣପୁରରେ ଦ୍ୱାଦଶାହ ଶ୍ରାଦ୍ଧବାସରରେ ପଠିତ)

## ଶ୍ରଦ୍ଧାଞ୍ଜଳୀ

ସାତ ସମୁଦ୍ରର ଶୁଖି ନ ଗଲରେ
ପର୍ବତ ପଡ଼ିଲା ଟଳି
ସାକ୍ଷିଗୋପାଳର ବକୁଳ ବନରେ
ଯା' ଶାଖା ଉଠିଲା ଜଳି ।
ତାହାର କଥା ମୁଁ କହୁ ବସିଲେରେ
ମହାଭାରତର ପାଠ
ବିସ୍ତର ବିସ୍ତର ହୃଦ ଥରହରେ
ଦେହ ଯାଉଛଇ କାଠ ।
ଏ ମାଟିର କୋଟି ମଣିଷ ପରାଣେ
ଜଳାଇ ଥିଲା ଯେ ନିଆଁ
ଶେଷେ ଏ ମାଟିର ନରମ ତଳରେ
ମିଶାଇ ଦେଲା ତା ହିଆ ।
ଦେଢ଼କୋଟି ଜନ ଢନ କୋଟି ଧାନେ
କହୁଥିଲା ଅର ଅର
ପଡ଼ୋଶୀ ରାଜକେ ଓଡ଼ିଆ ପାଇକ
ଘୁଅ ହୁଏ ଥରଥର ।
ମହାରାଜ୍ୟ ହେବ ତାଙ୍କର ପାଇଁକି
ତାଙ୍କୁ ନେଇ ଯାଅ ଚଳ
ମୁଣ୍ଡ କଟୁ ପଛେ ତୁଣ୍ଡ ବନ୍ଦ କର
ରହିବା କି ଡର ଡର ।

ତରୁଣ ବୟସେ ଗୁଣେ ଗଣ୍ଡସ୍ଥାନ
ବାଳ ଅରୁଣର ତେଜେ
ଗୋରା ସାହେବଙ୍କୁ ଚମକାଇ ଦେଲ
ଯେ ଜାଣେ ସେ ଆଜ ହେଜେ ।
ଯଶ ହେଲ ଯେତେ ହାକମ ଗୃକଣ୍ଡି
ହଜାର ହଜାର ଟଙ୍କା
ସ୍ୱେଜଗାର ପଦ ଲାଳସା ଲୋଭ ସେ
ଏଡ଼ିଲ୍ଲ ନ ବହୁ ଶଙ୍କା ।
କଥା ମାନଥିଲେ ଗୋରା ସରକାର
ବାନ୍ଧିତ ଥାଆନ୍ତେ ନେଇ
ପାଠ ପଢ଼ାଇଣ କଲିକତା ଧାମେ
ଗୃକଣ୍ଡି ଖଣ୍ଡ ଇ ଦେଇ
ରହିଥାନ୍ତେ କେତେ ଶରଧା ସୋହାଗେ
ବଡ଼ ହାକିମର ପଦେ
ପଣ୍ଡିଲ କାହିଁ ସେ ପରଦେଶୀ ପଦ
ଗୋଲାମି ସୁଆଦ ଛନ୍ଦେ ।
ଶୁଝିଲ କାହିଁ ସେ ଶୁଣାଇ ଦେଲ ରେ
ଲୋକେ ପଢ଼ିଥିଲେ କାଢ
ଏକୁଟିଆ ପେଟ ପୂରା ଖାଇଥିଲେ
ଫୁଲିକ ଉଠିବ ଗୁଡ଼ ।
ଶୁଝିଲ କେବଳ ଜଣକର କଥା
ଗୋଟିଏ ଓଠର ବାଣୀ
ଦେହ ମନ ପ୍ରାଣ ଉକଳ ମାଉସ
ତା ପଦେ ହେଲରେ ଟାଣି ।
ଉତ୍କଳମଣି ଗୋପବନ୍ଧୁଙ୍କର
ନ ମନ୍ତ୍ର ବାଜିଲ ଭାଜେ
ଯେପରି ଏ ଦେଶ ବଣ, ବାଲି, ମାଟି,
ନଈ, ନାଲି ଜଳ ଭାଜେ ।

କଣ୍ଠ ତାହାର ଥରେ ଉଠିଲରେ
ଶୃଙ୍ଗ ଶିଖରୁ ଚୂଳେ
ବିତରିଲ ପିଏ ମନପ୍ରାଣେ ଭରି
ମହୋଦଧି କୂଳେ କୂଳେ ।
ଦେଖିଲ ଯେବେ ସେ ମୂର୍ଚ୍ଛାହତ ସମ
ଓଡ଼ିଆ ପଡ଼ିଛି ଶୋଇ
ବରଷ ବରଷ ଗ୍ରାସି ନେଉଛିରେ
ହଇଜା ମରୁଡ଼ି ଧୋଇ ।
ଦେଶ ସେବା ପାଇଁ ଅଣ୍ଟା ଭିଡ଼ି ସେବେ
କରିଥିଲ ଆଣ୍ଠୁ ପଣ
ଦେଶ ସେବା ପାଇଁ ବଳି ଦେଲ ପିଏ
ଆପଣା ଜୀବନ ମନ ।
ଓଡ଼ିଆ ଜାତିର କୁଳଗୁରୁ ଗୋପ-
ବନ୍ଧୁଙ୍କର ପାଶେ ପାଶେ
ଜୀବନ ବିତାଇ ଲଭିଗଲ ପିଏ
କେଉଁ ମହାଧନ ଆଶେ ।
ଓଡ଼ିଆ ସଂସ୍କୃତି ସୁରକ୍ଷା ପାଇଁକି
ଦୂରେ ଚକ୍ରଧର ପୁରେ
ବିଦ୍ୟାପୀଠ ଗଢ଼ି ଥିଲ ପରା ପିଏ
ସେଇ ମାଟି ଆଜ ଝୁରେ
କବିତାରେ ଦେଲ ନୂଆ ରୂପ ରେଖ
ନାଟକେ ଜାତୀୟ କଳା
ଉପନ୍ୟାସେ ତାର ଓଡ଼ିଆ ଜାତିର
ଛତିଲ ରକତ ଢଳା ।

ବକ୍ତା ପଣେ କଣେ ଥିଲ ଏ ଦେଶରେ ବେଶରେ ସହଜ ସାଧା
ସହିଲ ପଛକେ ଟଙ୍କା ପଇସାର ବିଷମ ଦାରୁଣ ବାଧା ।

ଧୀନତା ଭିତରେ ଜାତିର ଧୀନତା ମୋଚନ ସମରେ ପଶି
କେତେବେଳେ ତାର ଘାତ ପ୍ରତିଘାତେ ପଡ଼ ଯାଇନାହିଁ ଖସି
ଜାଣିଥିଲ ସିଏ ଦେଶସାରା ଯେବେ ଶିକ୍ଷିତ ହୋଇବେ ବେଶି
ଅଭାବ ଭିତରେ ଆପେ ଆପେ ନିଶ୍ଚେ ଉପରକୁ ହେବେ ଠେଶି
ଏ ଜାତିର ଶତ ଉତ୍କଳ ତରୁଣ ଉଙ୍ଘିବେ ଦେଶ ଦୁଃଖ
ତେଣୁ ପରା ବିଶ୍ୱବିଦ୍ୟାଳୟ ଗଢ଼ି ମାନସେ ଲଭିଲ ସୁଖ ।
କଟକ ନଗରେ ଚିକିତ୍ସା ବିଜ୍ଞାନ ମହାବିଦ୍ୟାଳୟ ଥାପି
ଜନହିତ କାମ କଲ ସେ ସେତେବେଳେ କିଏସେ ପାରିବ ମାପି
ଉତ୍କଳଜନନୀ ଖଣ୍ଡ ବିଖଣ୍ଡିତ ହତଶ୍ରୀ ତାର ଦେଖି
ଲୁହ ଭିତରେ ତା ଇସ୍ପାତ ଅକ୍ଷରେ ରଖିଥିଲ ପରା ଲେଖି ।
ପୂର୍ଣ୍ଣାଙ୍ଗ ଉତ୍କଳ ସେ ନାଁଏ ନହୁଏ ମରରେ ପଛକେ ମର
ଖିସ୍ତ ସମ ଶଙ୍ଖ ଫୁଙ୍କି ଏ ଜାତିକୁ ଜଗାଇଲ ଥର ଥର ।
ଏଇଥିପାଇଁକି ପଡ଼ୋଶୀ ରାଇଜ ନେତାଙ୍କ ବଇରୀ ସାଜି
ଆପଣା ମାଟିର ଭଲ ମନ୍ଦେ ତାର ମନ ନେଇଥିଲ ମାଜି ।
ନହେଲ ପଛକେ ସ୍ୱର୍ଣ୍ଣ ସିଂହାସନ ନ ବାନ୍ଧୁ କିଏ ସେ ପାଗ
ଜାଣିଥିଲ ସିଏ କାନ ନାହିଁ ଯେବେ ନୋଳିରେ ଟା କେଉଁ ବାଗ
ଜାତି ଜନ୍ମମାଟି ଲୁହ ଫିଟାଇଣ ରଉଦରେ ଯେବେ ସଢ଼େ
ଲଭ କି ରହୁଛୁ ଏକୁଟିଆ ଜଣେ ରହିଲେ କନକ ଗଢ଼େ ।
ଜାଣିଥିଲ ସିଏ ଏ ଦେଶ ଜନତା ପେଟ ଯାଉଥିଲେ ତାତି
ଏକୁଟିଆ ମନତୋଷେ ଖାଇଥିଲେ ଫଳକ ଉଠିବ ଲୁହ ।
କାହିଁ ଧଳଭୂମି ସିଂହଭୂମି ସାରା ନସ୍କନୁ ଲୋକଙ୍କ ଝରେ
ଯଶପୁର ବନ୍ଦୀ ନୁଆଗଡ଼ ପ୍ରାଣ ମରମେ ମରମେ ମରେ ।
ମନ୍ତ୍ରୀ ଛରଲା ଟିକାଲିରେ କାହିଁ କହଇ କୁଟୀରବାସୀ
ଙ୍ଗଅର ଆମର ଭୁଲି ତ ଗଲରେ ଆମ ଗଲେ ଦେଇ ଫାଶୀ ।
ଦଣ୍ଡଗିଳା କହେ ଶାଳିଆରେ ରାଇ ସରଛୁ ସଜଳ ସୁଖ
ମହାନଦୀ କହେ ମହେନ୍ଦ୍ରେ ହଜାର ହୃଦେ ଦେଇଗଲ ଦୁଃଖ

ଦକ୍ଷ ପ୍ରଜାପତି — ଦେଉଳ ଚୂଳର

ପତାକା ପଡ଼ିଛୁ ନଇଁ

ନୀଳାଚଳ ଚୂଳେ — ପତିତପାବନ-

ବାନା ବାନ୍ଧେ କଇଁ କଇଁ ।

ଭଗବତୀ ପୀଠ — ନଚୁଟିଆ ଲାଗେ

ସ୍ୱତନ୍ତ୍ରୀନ ଭାଳିଜାଣ୍ଡ

ଶ୍ରୀକ୍ଷେତ୍ରେ ବିମଳା — ଆଖି ଛଳ ଛଳ

ଶୋକେ ଭାସେ ସମଲଇ ।

ରଉଦ୍ରଗେ ଦୁଃଖ — ଯୋଡ଼ି ଯାଉଛୁ ଲୋ

ଚଳିକା ହେଲୁ କି ଥିର

ମହୋଦଧି ମଧ୍ୟା — ବିକଳ ପରାଣେ

କୂଳରେ କଷୁଡ଼େ ଶିର ।

ବାଣପୁର ଭୃଗୁ- — ସୀମା କୋଳୁ ତୋଳେ

ପିଣ୍ଡେ କି ପରାଣ ନାହିଁ

ତେର ଜଳ କହେ — ଗୁଡ ଫାଟିଯାଏ

ତା ସମ ଜଣେ କେ କାହିଁ ।

ଶ୍ରୀ ଗୋଦାବରୀଶ — ବିୟୋଗେ ବିଚ୍ଛେଦେ

ବାଣପୁର ଡାଳେ ଲୁହ

ତେର ଜଳ କହେ — ଭୃହିଁ ରଉଦ୍ରରେ

ଛୁଟିଛୁ ଲୁହର ସୁଅ ।

ତାଆର କଥା ମୁଁ — କି ଅବା କହିବି

ହୃଦୟ ହୁଅଇ ଦଳି

ସାକ୍ଷିଗୋପାଳର — ବକୁଳ ବନରେ

ଯା’ ଚିତା ଉଠିଲା ଜଳି ।୩।

---

## ଅନ୍ୟାନ୍ୟ କବିକୃତି

ପ୍ରକାଶିତ

୧ । ପ୍ରମଦ୍‌ବର

୨ । ଶାଳଆ ନକ୍ସର ଡେଉ

ଯନ୍ତ୍ରସ୍ଥ

୩ । ଗାୟକ ବିନୋଦ ପଦ୍ୟାବଳୀ

୪ । ଜଗନ୍ନାଥ ଦର୍ଶନ

ଅ ପ୍ର କା ଶି ତ

୫ । ବିପ୍ଳବୀ କୃଷ୍ଣ

୬ । ଜନ୍ମଣୀ

୭ । ଶ୍ରୀମଦ୍ ଭଗବଦ୍-ଗୀତା କଥାମୃତ

୮ । କଚ ଦେବଯାନୀ — (ପାଲକାବ୍ୟ)

୯ । ଯୌତୁକ (ସ୍ୟମନ୍ତକମଣି) ,,

୧୦ । ଭାଗ୍ୟଲକ୍ଷ୍ମୀ (ଗେହ୍ଭାଣ୍ଡ ଜନ୍ମ) ,,

୧୧ । ସମାଧାନ ,,

୧୨ । ଶ୍ରୀପୁରୁଷୋତ୍ତମ ଦେବ (ସଂଯୋଜନା) ,,

୧୩ । ଦ୍ୱିତୀୟ ମହାଯୁଦ୍ଧର ରୋମାଞ୍ଚକର କାହାଣୀ

୧୪ । ଅତୀତ ଭାରତର ସଚିତ୍ର କଥା ଓ ଅନ୍ୟାନ୍ୟ

Cover Printed at Ekamra Press, Bhubaneswar-751 007